ସାରା ଭାରତ

# ଆମ ଏକତା



## ଆଲୋଚନା ମାଳା

ପ୍ରସ୍ତୁତି :-
ସର୍ବଭାରତୀୟ ଜନ ବିଜ୍ଞାନ ସଂଗଠନ
ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା
ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର - ୭୫୧ ୦୦୩

# ଆମ ଏକତା

ଆମ ଦେଶର ଐତିହ ବା ପରମ୍ପରାକୁ ନେଇ ଆମେ ସବୁବେଳେ ଗର୍ବ କରୁ । ଅତୀତକୁ ସ୍ମରଣ କରିବା ଆବଶ୍ୟକ । ତା'ର ଅଭିଜ୍ଞତାରୁ ଜ୍ଞାନ ଆହରଣ କରିବା ଆମର କର୍ତ୍ତବ୍ୟ । କିନ୍ତୁ ଅତୀତର ଗୁଣ କୀର୍ତ୍ତନ କରିକରି ବର୍ତ୍ତମାନକୁ ସ୍ଥାଣୁ କରିଦେବା ଓ ଭବିଷ୍ୟତକୁ ଅନ୍ଧକାରମୟ କରିବା ନିରର୍ଥକ । ଆମ ଅତୀତର ମହାନ୍ ସଂସ୍କୃତି ଆଉ ଧର୍ମକୁ ପାଥେୟ କରି କେତେକ ସାଂପ୍ରଦାୟିକତା ଶକ୍ତି ମୁଣ୍ଡ ଟେକିଛନ୍ତି । ସେମାନେ ଆମ ଜାତି ଓ ଧର୍ମର ମହାତ୍ମ୍ୟକୁ ଦର୍ଶାଇ ଏକ ବିଭେଦ ସୃଷ୍ଟି କରୁଛନ୍ତି । ଗତ କେତେବର୍ଷ ହେଲା ଏଭଳି ଏକ ହାଓ୍ୱା ଆମ ସମାଜକୁ ଗ୍ରାସ କରିଛି । ଗୋଟିଏ ସମ୍ପ୍ରଦାୟର ଲୋକ ଆଉ ଏକ ସମ୍ପ୍ରଦାୟର ଲୋକମାନଙ୍କୁ ଶତ୍ରୁ ମନେ କରୁଛନ୍ତି । ଧର୍ମାନ୍ଧତାର ବଶ ହୋଇ ନିରୀହ ସରଳ ଲୋକଙ୍କୁ ନୃଶଂସ ଏବଂ ଅମାନୁଷିକ ଭାବେ ହତ୍ୟା କରୁଛନ୍ତି । ଯେଉଁମାନେ ଏ କାଣ୍ଡ ଘଟାଉଛନ୍ତି ବାସ୍ତବରେ ଦେଖିବାକୁ ଗଲେ ସେମାନେ ମଧ୍ୟ ସରଳ କିନ୍ତୁ ଏକ ମୋହଗ୍ରସ୍ତ ଧର୍ମାନ୍ଧତା ସ୍ରୋତରେ ଭାସିଯାଇ ସେମାନେ ଅନ୍ଧ ହୋଇ ଯାଇ ନିଜ ଦେଶ ଓ ଜାତି ନାଁ ରେ ଯେଉଁ ଜଘନ୍ୟ କାର୍ଯ୍ୟକରୁଛନ୍ତି ସେମାନେ ତାହା ହୃଦୟଙ୍ଗମ କରିପାରୁନାହାନ୍ତି । ଏ ପ୍ରକାର ଜଘନ୍ୟ ଓ ବର୍ବର କାର୍ଯ୍ୟ ସହିତ ଆମ ଧର୍ମ ବା ଗାରିମାର କିଛି ସଂପର୍କ ନାହିଁ । ବରଂ ଏହା ଆମ ବର୍ତ୍ତମାନ ଓ ଭବିଷ୍ୟତକୁ ଦୋହଲାଇ ଦେଉଛି । ଏହା ଆମ ସଂସ୍କୃତି, ସଭ୍ୟତା ଓ ଐତିହର ଅପୂରଣୀୟ କ୍ଷତି ଘଟାଉଛି ।

**ବର୍ତ୍ତମାନର ଆହ୍ୱାନ :-**

ପଞ୍ଜାବରେ ଆଉ ଏକ ଉତ୍କଟ ଆଞ୍ଚଳିକତାର ଅହଂଭାବ ସୃଷ୍ଟି କରିବା ପାଇଁ ଷଡ଼ଯନ୍ତ୍ର କରାଯାଇଥିଲା ।

ଏହା ଏପରି ଏକ ଉତ୍କଟ ଅହଂଭାବ ସୃଷ୍ଟିକଲା ଯାହା ଭାଇ ଭାଇ ମଧ୍ୟରେ ଶତୃତା ସୃଷ୍ଟିକଲା । ପରସ୍ପର ରକ୍ତମୁଖା ହୋଇପଡ଼ିଲେ । ଅବଶ୍ୟ ଏହି ଷଡ଼ଯନ୍ତ୍ର ପଣ୍ଡ ହେଲା । କାଶ୍ମୀରରେ ସେଭଳି ଏକ ଅହଂଭାବର ପ୍ରଚ୍ଚାର କରାଯାଉଛି । ଯୋଉ ମୁସଲ୍‌ମାନ୍ ଭାଇ ଭଉଣୀ ମାନେ ସେତେବେଳେ ପାକିସ୍ଥାନ ଏକ ଧର୍ମଭିତ୍ତିକ ରାଷ୍ଟ୍ର ହେଉଥିବାରୁ ତାହାକୁ ପ୍ରତ୍ୟାଖ୍ୟାନ କରି ଭାରତ ଭଳି ଏକ ଧର୍ମନିରପେକ୍ଷ ରାଷ୍ଟ୍ରରେ ମିଶିବା ପାଇଁ ନିଷ୍ପତ୍ତି ନେଇଥିଲେ, ସେଠାରେ ବର୍ତ୍ତମାନ ଏଭଳି ଏକ ଧର୍ମଭିତ୍ତିକ ଅହଂଭାବକୁ ଉସକାଯାଉଛି ।

ଏଭଳି ଅନେକ ଆଞ୍ଚଳିକ ସ୍ତରରେ କୌଣସିଠାରେ ଭାଷାଭିତ୍ତିକ, ଜାତିଭିତ୍ତିକ ବା ଅନ୍ୟ କେଉଁଠାରେ ନଦୀଜଳ ବଣ୍ଟନକୁ କେନ୍ଦ୍ର କରି ପ୍ରାଦେଶିକ ସ୍ତରରେ ଉଗ୍ରଆଂଚଳିକତାବାଦ ମୁଣ୍ଡ ଟେକୁଛି । ଅନେକ ସ୍ଥାନରେ ତଥାକଥିତ ଉଚ୍ଚ ଜାତି ଲୋକଙ୍କର ଅହଂକାରରେ ଶିକାର ହୋଇ ଅନେକ ସାଧାରଣ ନାଗରିକ ଦଳିତ ଏବଂ ନିଷ୍ପେଷିତ ହେଉଛନ୍ତି । ଜାତିଗତ ଅହଂକାରକୁ ନେଇ ସଂଗଠିତ ଭାବରେ ଗାଁ ଗାଁ ବା ସାହି ସାହି ଭିତରେ ଗୃହ ଯୁଦ୍ଧ ହୋଇ ଯାଉଛି । ଏସବୁର ଶିକାର ହେଉଛନ୍ତି କେବଳ ନିରୀହ ଏବଂ ଗରିବ ଲୋକମାନେ ଆହୁରି ଦୁଃଖଦ ଘଟଣା ହେଉଛି ପୁରୁଷମାନଙ୍କର ତଥାକଥିତ ବଡ଼ପଣିଆର ଶିକାର ହେଉଛନ୍ତି ଆମ ଦେଶର ଅଗଣିତ ନିରୀହ ସ୍ତ୍ରୀ ଲୋକ ଏବଂ ଝିଅମାନେ । ଏବେବି ସତୀଦାହ ଏବଂ ଯୌତୁକ ପ୍ରଥା ଭଳି ନାରକୀୟ କୁପ୍ରଥା ଆମ ସମାଜକୁ ଗ୍ରାସ କରି ରଖିଛି । ଏସବୁ ଦେଖିଲେ ମନେହୁଏ ଆମ ଦେଶର ସ୍ତ୍ରୀ ଲୋକମାନେ ଏବେବି ଦ୍ୱିତୀୟ ଶ୍ରେଣୀର ନାଗରିକ ଭାବେ ରହିଛନ୍ତି ।

**ଅହଂଭାବ କେଉଁଠି ?**

ଆମ ସମାଜରେ ହେଉ ବା ବିଭିନ୍ନ ବ୍ୟକ୍ତିମାନଙ୍କଠାରେ ଏହି ଅହଂଭାବର ଉତ୍ସ କେଉଁଠି ? ଜଣେ ଅନ୍ୟ ଜଣଙ୍କଠାରେ ଅଲଗା ବା ଗୋଟିଏ ପ୍ରକାର ସମାଜ ଅନ୍ୟଠାରୁ ଗୁଣାତ୍ମକ ଭାବେ ଅଲଗା ହୋଇପାରେ । ଯେପରିକି ପୁରୁଷଟି ସ୍ତ୍ରୀଠାରୁ ଶାରିରୀକ ଗଠନରେ ଅଲଗା । ଜଣେ ଅନ୍ୟଠାରୁ ସ୍ୱଭାବରେ ହେଉ, ଆକାର ବା ଆଚ୍ଛର ବ୍ୟବହାରରେ ହେଉ ଭିନ୍ନ ବୋଲି ଗ୍ରହଣ କରାଯାଇ ପାରେ କିନ୍ତୁ ଯେତେବେଳେ ଜଣେ ଜନ୍ମଗତ କାରଣରୁ ବା ତଥାକଥିତ ଜାତି ପ୍ରଥା ଦୃଷ୍ଟିରୁ ଅନ୍ୟ ଜଣଙ୍କଠାରୁ ଉଚ୍ଚ ବା ନୀଚ ବୋଲି ବିଶ୍ୱାସ କରେ ତାହା ସମାଜପାଇଁ କ୍ଷତିକାରକ । ସେ ଏହା ପ୍ରକାଶ କରୁ ବା ନକରୁ ଏଭଳି ଚିନ୍ତାଧାରା ସଭ୍ୟତା ପାଇଁ ହାନୀକାରକ । ଏହା ପ୍ରକାଶ୍ୟରେ ଘୋଷଣା କରିବା ଅର୍ଥ ଜଣେ ବ୍ୟକ୍ତି ବା ଗୋଷ୍ଠି ଅନ୍ୟଜଣେ ବ୍ୟକ୍ତି ବା ଗୋଷ୍ଠିଙ୍କ ବିରୁଦ୍ଧରେ ବିରୁଧାଚରଣ କରିବା ସହିତ ସମାନ । ଏଭଳି ଉଚ୍ଚନୀଚ ଚିନ୍ତାଧାରା ଦ୍ୱାରା ଆମ ସମାଜରେ ପରସ୍ପର ମଧ୍ୟରେ ବିଭେଦତା ବା ଶତ୍ରୁତା ସୃଷ୍ଟି କରିଛି । ଏହା ସମାଜକୁ ଭାଗ ଭାଗ ଓ ଖଣ୍ଡ ଖଣ୍ଡ କରିଦେଇଛି । ଯାହା ଜାତି ପାଇଁ ପ୍ରଯୁଜ୍ୟ ତାହା ବିଭିନ୍ନ ଧର୍ମ ପାଇଁ ମଧ୍ୟ ପ୍ରଯୁଜ୍ୟ । ବାସ୍ତବରେ ଦେଖିବାକୁ ଗଲେ ଏହି ଜାତି, ଧର୍ମ ବା ସଂପ୍ରାଦୟ ସହ ଜଡ଼ିତ ଅହଂଭାବ ଏକ କୁସଂସ୍କାର ନୁହେଁ କି ? ଯେତେବେଳେ ମଣିଷର ଚିନ୍ତାଶକ୍ତିର ଲୋପ ହୁଏ ସମାଜରେ ଏଭଳି କୁସଂସ୍କାର ବା ଅନ୍ଧବିଶ୍ୱାସର ପୁନରାବୃତ୍ତି ହୁଏ । କେବଳ ଭାରତରେ ନୁହେଁ - ଜର୍ମାନୀରେ ହିଟ୍‌ଲର୍ ବୋଲି ଜଣେ ସ୍ୱେଚ୍ଛାଚ୍ଛରୀ ଶାସକ ମଧ୍ୟ ଥରେ ଏଭଳି ଉଚ୍ଚନୀଚ ସଂପ୍ରଦାୟ ବା ଜାତିର

ଆଖ୍ୟା ଦେଇ ଜର୍ମାନମାନଙ୍କୁ କିଛିଦିନ ପାଇଁ ଅନ୍ଧକାର ରଖିଥିଲେ । ଯେଉଁଠାରେ ଯେବେ ବି ହେଉନା କାହିଁକି ଏହି ଭ୍ରାନ୍ତିକର ଧାରଣାର ଉତ୍ପତ୍ତି ହେଲା ମାତ୍ରେ ସେ ସମାଜ ବା ସଭ୍ୟତାର ପତନ ହୋଇଥାଏ । ଯେଉଭଳିକି ଭାରତୀୟ ସଭ୍ୟତା ବା ସଂସ୍କୃତିର ପତନ ପାଇଁ ଏହି ଉଚ୍ଚନୀଚ ଭେଦ ଭାବ ବା ଜାତି ପ୍ରଥା ଏକ ମୁଖ୍ୟ କାରଣ ଥିଲା ।

ତେବେ ବିଭିନ୍ନ ପ୍ରକାର ଭାଷା, ଧର୍ମ, ବିଭିନ୍ନ ପ୍ରକାର ଜାତି, ଉପଜାତି, ବିଭିନ୍ନ ପ୍ରକାର ପରମ୍ପରା ଆଚାର-ବ୍ୟବହାର ଥାଇ ଗୋଟିଏ ସମାଜରେ କ'ଣ ଏକତା ସମ୍ଭବ ? ଯଦି ଏହା ସମ୍ଭବ ହୋଇ ନଥାନ୍ତା ତେବେ ଭାରତୀୟ ସଂସ୍କୃତି-ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଗତ ଶହ ଶହ ବର୍ଷଧରି ତିଷ୍ଠିରହି ପାରିଛି କିପରି ? ଏହି ଭାରତ ଭୂଇଁରେ ବିଭିନ୍ନତା ମଧ୍ୟରେ ଏକତାର ଏକ ଜୀବନ୍ତ ପରମ୍ପରାର ଚିହ୍ନ ବଞ୍ଚିରହିଛି । କବିମାନେ ଏହାକୁ ଏକ ବଗିଚାରେ ବିଭିନ୍ନ ପ୍ରକାର ଫୁଲ ସହ ତୁଳନା କରିଛନ୍ତି । ଏବଂ ଏହି ବିଭିନ୍ନତାରେ ହିଁ ବଗିଚାର ସୌନ୍ଦର୍ଯ୍ୟ ରହିଛି ବୋଲି ପ୍ରତିପାଦନ କରିଛନ୍ତି । ଭାରତକୁ ହିମାଳୟଠାରୁ କନ୍ୟାକୁମାରୀର ଦେଶ, ସର୍ବବୃହତ ଗଣତନ୍ତ୍ରର ଦେଶ ବା ପୃଥିବୀର ସର୍ବବୃହତ୍ ଦ୍ୱିତୀୟ ଜନସଂଖ୍ୟାର ଦେଶ ବୋଲି ଆଖ୍ୟା ଦିଆଯାଇଥିଲେ ବି ଆମର ବିଶେଷତ୍ୱ ହେଉଛି ଆମର ଲୋକମାନଙ୍କର ହୃଦୟରେ ଏକ ସୂକ୍ଷ୍ମ ବିଚାରଧାରାର ପରମ୍ପରା ଅଛି ଯାହା ପରସ୍ପରକୁ ଅତି ଆପଣାର କରି ଧରିରଖିଛି ଏବଂ ଏହି ସୂକ୍ଷ୍ମ ବିଚାରଧାରା କୌଣସି ସଂପ୍ରଦାୟ ଧର୍ମ ବା ଜାତିପ୍ରଥା ଦ୍ୱାରା ପ୍ରଭାବିତ ନହୋଇ ଏକ ମାନବିକ ମୂଲ୍ୟବୋଧ ନାମରେ ବଂଚି ରହିଛି ।

**ବିଭିନ୍ନତା ମଧ୍ୟରେ ଏକତାର ଧାରା :-**

ଭାରତର ଗୌରବମୟ ପ୍ରାଚୀନ ସଭ୍ୟତାର ମହନୀୟତାକୁ ପ୍ରଶଂସା କଲାବେଳେ ତା'ର ଗୋଟିଏ ଗୋଟିଏ ଦିଗକୁ ଏକକ ଭାବେ କଳନା ନକରି ସମନ୍ୱୀତ ଦୃଷ୍ଟିରେ ବିଭିନ୍ନ ଦିଗକୁ ଏକ ସଙ୍ଗରେ ନଦେଖିଲେ ତାହା ଏକପାଖିଆ ବା ଅସଂପୂର୍ଣ୍ଣ ହେବ । ଏହା ଏକ ରସ-ବିହୀନ-ସ୍ୱାଦ ବା ରଙ୍ଗ ବିହୀନ ପଦାର୍ଥ ଭଳି ଲାଗିବ । ଏହି ସଭ୍ୟତାର ମୂଳଦୁଆ କେବଳ ଭିନ୍ନ ଭିନ୍ନ ଧର୍ମ ଭିନ୍ନ ଭିନ୍ନ ଜାତି ଏବଂ ଭିନ୍ନ ଭିନ୍ନ ଭାଷାଗତ ସ୍ୱାଧୀନତାକୁ ସ୍ୱୀକାର କରୁନଥିଲା ବରଂ ସେମାନଙ୍କର ମୁକ୍ତ ଏବଂ ଅବାଧ ଅଭିବୃଦ୍ଧି ପାଇଁ ପ୍ରଶୟ ଦେଇଥିଲା । ଏସବୁର ବିଭିନ୍ନତା ମଧ୍ୟରେ ଏକତାର ମଞ୍ଜି ବୁଣି ପରିଥିଲା । ଏପରି ଏକ ସଂସ୍କୃତିର ବିଭିନ୍ନତା ଓ ଉଦାରତାର ଗୁରୁତ୍ୱକୁ ଉପଲବ୍ଧି ନକରି କେବଳ ଉପରଠାଉରିଆ ଭାବେ କଳନା କଲେ ଆମ ସମାଜର ମୂଳଦୁଆକୁ ଅସ୍ୱୀକାର କରିବା ସାର ହେବ । ତେଣୁ ଭାରତୀୟ ସଭ୍ୟତା ବା ସଂସ୍କୃତିର ବ୍ୟାପକତାକୁ

ମାପିବାକୁ ହେଲେ ଆମକୁ ଏକ ଗୁଣ ବିଶିଷ୍ଟ ମାପକାଠି ନନେଇ ବହୁଗୁଣ ବିଶିଷ୍ଟ ମାପକାଠି ନେବାକୁ ପଡ଼ିବ । ନଚେତ୍ ଆମ ସଭ୍ୟତାର ବିବିଧତାକୁ ଆମେ ଅନ୍ଧକାରରେ ଆବଦ୍ଧ କରିବା ସହ ସମାନ ହେବ ।

ଅମ ଦେଶରେ ବିଭିନ୍ନ ବ୍ୟକ୍ତି ବିଶେଷ ବା ଗୋଷ୍ଠିଙ୍କର ନିଜ ନିଜର ସ୍ୱତନ୍ତ୍ର ଭାଷା ଧର୍ମ ଋଚି ଏବଂ ପରମ୍ପରା ଅଛି । ସେମାନେ ସେହି ଭାଷା ଧର୍ମ ବା ପରମ୍ପରା ଦ୍ୱାରା ଶତାବ୍ଦି ଶତାବ୍ଦି ଧରି ନିଜକୁ କରିପ୍ରକାଶ କରି ଆସିଛନ୍ତି । ଏହା ଅତ୍ୟନ୍ତ ସ୍ୱାଭାବିକ । ଏଥିରେ ଟିକିଏ ହେଲେ ଆବିଳତା ବା କୃତ୍ରିମତା ନାହିଁ । ଜଣେ ବ୍ୟକ୍ତି ବା ଗୋଷ୍ଠି ତା'ର ନିଜର ଭାଷା, ଧର୍ମ, ଋଚି ବା ପରମ୍ପରା ଦ୍ୱାରା ହିଁ ନିଜର ଆବେଗ ବା ଚିନ୍ତାଧାରାକୁ ପ୍ରକାଶ କରିପାରେ । ଏସବୁଗୁଡ଼ିକ ନିଜକୁ ପ୍ରକାଶ କରିବାର ମାଧ୍ୟମ ମାତ୍ର । ସେହି ଭାଷା ଧର୍ମ ବା ପରମ୍ପରା ସହ ସଂଶ୍ଳିଷ୍ଟ ହୋଇଥିବା ମଣିଷମାନେ ବିଭିନ୍ନଭାବରେ ଗୁଜୁରାଟି, ଓଡ଼ିଆ, ମରାଠି, ବଙ୍ଗାଳୀ, ତାମିଲି ବା କାଶ୍ମୀରୀ ଭାବରେ ପରିଚିତ ହୁଅନ୍ତି । ଏସବୁ ପରିଚୟ ଗୁଡ଼ିକ କେଉଁ ଜାତି ବା ଗୋଷ୍ଠୀର ଉତ୍କର୍ଷ ବା ନ୍ୟୁନତାକୁ ବୁଝାଏ ନାହିଁ । ଯେପରିକି ବିଭିନ୍ନ ଅଞ୍ଚଳ ବା ଜଳବାୟୁ ଅନୁସାରେ ପ୍ରତି ସମାଜର ଖାଦ୍ୟ ବା ପୋଷାକପତ୍ର ବଦଳିଥାଏ । ବିଭିନ୍ନ ଗୋଷ୍ଠୀ ବା ସମାଜର ଦେବାଦେବୀ, ପୂଜା-ପାର୍ବଣ, ଗୃହବାସ ମଧ୍ୟ ବିଭିନ୍ନ ଭୌଗଳିକ ପରିସ୍ଥିତି ବା ଜଳବାୟୁ ଅନୁସାରେ ଗଢ଼ିଉଠିଥାଏ । ଏସବୁ ବିଭିନ୍ନତାକୁ ନେଇ ମଧ୍ୟ ସମାଜର ଐକ୍ୟ ପ୍ରତିଷ୍ଠା ହୋଇଥାଏ । ଗୋଟିଏ ସ୍ଥାନର ଦେବାଦେବୀ ବା ପୂଜାପଦ୍ଧତି ଅନ୍ୟଠାରୁ ଉଚ୍ଚ ବା ନୀଚ କହିବା ଅର୍ଥ ଗୋଟିଏ ଅଞ୍ଚଳର ଖାଦ୍ୟପଦାର୍ଥ ବା ଖାଦ୍ୟ ରୁଚିଠାରୁ ଅନ୍ୟ ଅଞ୍ଚଳର ଖାଦ୍ୟ ରୁଚିକୁ ଭଲ ବା ମନ୍ଦ କହିବା ସହ ସମାନ । ଏହା କେବଳ ଏକ ସଙ୍କୀର୍ଣ୍ଣ ମନର ବିଗ୍ରହଛଡ଼ା ଆଉ କିଛି ନୁହେଁ ।

ସମାନତା ବା ଏକତା କହିଲେ ଦେଶର ସବୁ କୋଣ ଅନୁକୋଣରେ ବସ-ବାସ କରୁଥିବା ଲୋକମାନଙ୍କର ସମାନ ଖାଦ୍ୟ, ସମାନ ବସ୍ତ୍ର , ଏକଭାଷା ଏକ ଧର୍ମକୁ ଗ୍ରହଣ କରିବା ବୁଝାଏ ନାହିଁ । ଅନ୍ୟପକ୍ଷରେ ସେମାନଙ୍କ ମନ ଏବଂ ହୃଦୟରେ ଏକ ଅନୁକମ୍ପା ଏକ ଆବେଗକୁ ବୁଝାଏ । ସବୁ ମଣିଷମାନେ ଏକ ଖାଦ୍ୟ, ଏକ ପ୍ରକାର ବସ୍ତ୍ର ଗ୍ରହଣକରି ସମାନ ଧର୍ମ, ସମାନ ଭାଷା ବ୍ୟବହାର କଲେ ମଧ୍ୟ (ଯଦିଓ ଏହା ସମ୍ଭବ ନୁହେଁ) ଯଦି ଏକ ବୁଝାମଣା ଏବଂ ମାନବିକତାର ଆବେଗ ସେମାନଙ୍କ ଭିତରେ ନରୁହେ ଏକତା କେବେ ବି ସମ୍ଭବ ହେବନାହିଁ । ବିଗତ ୪୦ବର୍ଷ ଧରି ଜାତି ଧର୍ମ ନାଁ ରେ ଯେଉଁ କୃତ୍ରିମ ବିଭେଦ ସୃଷ୍ଟିକରାଯାଇଛି ତା'ର ମୂଳ ଉତ୍ପାଟନ କରିବାକୁ ହେଲେ ଆମ ସମାଜ ଓ ସଂସ୍କୃତିର ଏଇ ମୂଳ ବିଗ୍ରହ ଧାରାକୁ ଆମକୁ ଅନୁଭବ କରିବାକୁ ପଡ଼ିବ ଯାହା ଗତ ଶତାବ୍ଦୀ ଶତାବ୍ଦୀଧରି ଏହି ଜାତିପ୍ରଥାକୁ ପରିଚାଳିତ କରିଥିଲା ।

ପ୍ରତି ମଣିଷ ବା ଗୋଷ୍ଠୀର ଅନ୍ୟ ମଣିଷ ବା ଗୋଷ୍ଠୀ ସହିତ ସଂପୂର୍ଣ୍ଣ ଐକ୍ୟ ଭାବନାନ ଆସିବା ପର୍ଯ୍ୟନ୍ତ ସମାଜ ବା ରାଷ୍ଟ୍ରର ପ୍ରଗତି ଅସମ୍ଭବ । ଯେଉଁ ଦେଶ ବା ସମାଜ ଯେତେ ପ୍ରଗତିଶୀଳ ସେ ଦେଶର ବ୍ୟକ୍ତି ବ୍ୟକ୍ତି ବା ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ଏକତାର ପରିପ୍ରକାଶ ସେତେ ଅଧିକ । ଏହାହିଁ ସଭ୍ୟତାର ଏକ ଗୁଣାତ୍ମକ ମାପକାଠି ବୋଲି ଧରି ନିଆଯାଇପାରେ ।

**ଆମ ସ୍ୱାଧୀନତା ସଂଗ୍ରାମର ଅବଦାନ :-**

ଏଇମାତ୍ର ୧୦୦ ବର୍ଷ ଆଗେ ଯେତେବେଳେ ବ୍ରିଟିଶ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା ସେତେବେଳେ କୌଣସି ଧର୍ମାନ୍ଧତା ବା ସଂକୀର୍ଣ୍ଣମନୋଭାବ ଆମ ଲୋକଙ୍କ ଭିତରେ ପଶିନଥିଲା । ୧୮୫୭ ମସିହା ସିପାହୀ ବିଦ୍ରୋହରେ ହିନ୍ଦୁ, ମୁସଲ୍‌ମାନ୍ କାନ୍ଧକୁ କାନ୍ଧ ମିଳାଇ ବ୍ରିଟିଶ୍ ବିରୁଦ୍ଧରେ ଲଢ଼ିଥିଲେ । ନେତାଜୀ ସୁବାଷ ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜର ଯେଉଁ ତିନି କର୍ଣ୍ଣଧାରାଙ୍କୁ ବ୍ରିଟିଶ୍ ସରକାର ଫାଶୀ ଖୁଣ୍ଟରେ ଝୁଲାଇ ଥିଲା ସେମାନେ ହେଲେ ସେଗାଲ୍ ଧିଲୋଁ ଏବଂ ସାହନଓ୍ୱାଜ - ଜଣେ ହିନ୍ଦୁ, ଜଣେ ଶିଖ ଏବଂ ଜଣେ ମୁସଲମାନ । ସିପାହୀ ବିଦ୍ରୋହଠାରୁ ଭାରତ ସ୍ୱାଧୀନ ହେଲାଯାଏଁ ଯେତେ ଭାବରେ ସଂଗ୍ରାମ ହୋଇଛି ତାହା ସବୁ ଧର୍ମ, ସବୁ ବର୍ଗର ଲୋକଙ୍କୁନେଇ ହୋଇଥିଲା ଏବଂ ତାହା ସମସ୍ତଙ୍କୁ ମଧ୍ୟ ଛୁଇଁ ପାରିଥିଲା, ଧନୀ ଗରୀବ, ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ଏହି ଆନ୍ଦୋଳନରେ ଝାସ ଦେଇଥିଲେ । କାରଣ ସମସ୍ତଙ୍କ ମନରେ ଥିଲା ସେଇ ଗୋଟିଏ କାର୍ଯ୍ୟ ତାହା ହେଲା ଭାରତମାତାର ମୁକ୍ତି । ଏହି ସମାନ ଭାବଧାରା, ଏହି ସ୍ୱତଃପ୍ରବୃତ୍ତ ବିଗ୍ରହଧାରା ଯାହା ଯୁଗ ଯୁଗ ଧରି ସମସ୍ତ ଭାରତୀୟଙ୍କୁ ବାନ୍ଧି ରଖିଛି ସେହି ଏକତାର ବିଜୟ ହେଲା ଏବଂ ଇଂରେଜମାନେ ଆମଦେଶ ଛାଡ଼ି ଚ୍ୱଲିଯାଇଥିଲେ ।

**ସ୍ୱାଧୀନତା ସଂଗ୍ରାମର ଭାବଧାରାର ବିରୋଧ ଆଦର୍ଶ :-**

ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବାକୁ ସ୍ୱାଧୀନତା ସଂଗ୍ରାମରେ ଯେତେବେଳେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକାଠି ହୋଇଥିଲେ ସେତେବେଳେ ମଧ୍ୟ ଏହି ବିଭେଦକାରୀ ଶକ୍ତିମାନେ ଭାରତରେ ଥିବା ଏକତାର ଭାବକୁ ବିରୋଧକରି ବିଭିନ୍ନ ସଂପ୍ରଦାୟ ବା ଧର୍ମ ନାଁରେ ନିଜର ପରିଚିତି କରାଇବାକୁ ଚେଷ୍ଟା କରିଥିଲେ । ତାଙ୍କ ପାଇଁ ତାଙ୍କ ଧର୍ମ ବା ଗୋଷ୍ଠୀ ଦେଶ ବା ସମାଜ ଠାରୁ ଅଧିକ ବଡ଼ ଥିଲା । କାରଣ ତାଙ୍କ ଉଦ୍ଦେଶ୍ୟ ସଂକୀର୍ଣ୍ଣ ଏବଂ ଆତ୍ମକୈନ୍ଦ୍ରିକ ଥିଲା । ମହାତ୍ମାଗାନ୍ଧୀ ଯେତେବେଳେ ଆମର ମୁକ୍ତି ହିନ୍ଦୁ-ମୁସଲମାନ ଏକତା ବା

ହିନ୍ଦୁ-ମୁସଲମାନ ଭାଇ ଭାଇ ଏହି ତତ୍ତ୍ୱ ଉପରେ ପ୍ରତିଷ୍ଠିତ ବୋଲି ଗୁରୁତ୍ୱ-ଆରୋପ କରୁଥିଲେ ଏ ବିଭେଦକାରୀ ଶକ୍ତିଗୁଡ଼ିକ କେବଳ ତାଙ୍କୁ ବିରୋଧ କରୁନଥିଲେ ବରଂ ପରସ୍ପର ମଧ୍ୟରେ ଶତ୍ରୁତାର ମଂଜି ବୁଣୁଥିଲେ । ସ୍ୱାଧୀନତା ସଂଗ୍ରାମର ସ୍ରୋତରେ ଝାସ ଦେଇଥିବା ଅଗଣିତ ନରନାରୀ ଏ ବିଭେଦକାରୀ ଶକ୍ତିମାନଙ୍କ ଅନ୍ତର୍ନିହୀତ ସ୍ୱାର୍ଥ ପ୍ରତି ବେଶ୍ ସଚେତନ ଥିଲେ । ତେଣୁ ସେମାନଙ୍କ ଆହ୍ୱାନକୁ ସେମାନେ ପ୍ରତ୍ୟାଖ୍ୟାନ କରିବା ସହିତ ରାଷ୍ଟ୍ରୀୟ ସ୍ୱଂୟସେବକ ସଂଘ ହିନ୍ଦୁ ମହାସଭା ମୁସଲିମ୍ ଲିଗ୍ ଭଳି ସାଂପ୍ରାଦାୟିକବାଦୀ ସଂଗଠନର ସଭ୍ୟ ହେବାକୁ ମନାକରି ଦେଇଥିଲେ ।

ଅନ୍ୟପକ୍ଷରେ ଏହି ସାଂପ୍ରଦାୟିକ ସଂଗଠନମାନେ ବ୍ରିଟିଶ୍ ଶକ୍ତିର ହାତବାରସି ହୋଇ ଯାଇଥିଲେ । ବିଟିଶ୍‌ମାନଙ୍କର ବିଭେଦ ସୃଷ୍ଟିକରି ଶାସନ କରିବାର ସୂତ୍ରକୁ ଏମାନେ ଯେ ପରୋକ୍ଷରେ ଖୁରାକ ଯୋଗାଇ ଥିଲେ ତାହା ଏମାନଙ୍କୁ ଜଣାନଥିଲା । ଏହାର ପରିଣାମସ୍ୱରୂପ ଭାରତ ଦି'ଭାଗ ହୋଇ ପାକିସ୍ଥାନର ସୃଷ୍ଟି ହେଲା ଏବଂ ପରିଶେଷରେ ମହାତ୍ମାଗାନ୍ଧୀଙ୍କୁ ଜୀବନ ଦେବାକୁ ପଡ଼ିଥିଲା ।

ଏବେ ପୁଣିଥରେ ସେହି ବିଭେଦକାରୀ ଶକ୍ତିମାନେ ସକ୍ରୀୟ ହୋଇ ସଂଗଠିତ ହୋଇଛନ୍ତି । ସେମାନେ ପୁଣିଥରେ ସାଂପ୍ରଦାୟିକତାର ଆହ୍ୱନ ଦେଉଛନ୍ତି, ଏହା ଆମ ଦେଶର କେତେକ ନାଗରିକଙ୍କୁ ଶତ୍ରୁ ବା ବିଦେଶୀରେ ପରିଣତ କରିବ ଅଥବା ସେମାନଙ୍କୁ ଏକ ନ୍ୟୁନ ନାଗରିକରେ ପରିଣତ କରିବ । ଏହି ଶକ୍ତିମାନେ ଏକତାର ଯେଉଁ ବିଗ୍ରହଧାରା ଉପରେ ଭାରତୀୟ ସଂସ୍କୃତି ଅଧିଷ୍ଠିତ ତାକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ଉଦ୍ୟମ ଚଳାଇଛନ୍ତି । ଭାରତକୁ ଏକ ତଥାକଥିତ ହିନ୍ଦୁ ରାଷ୍ଟ୍ର କହିବା ପଛରେ ଆଉ କ'ଣ ଉଦ୍ଦେଶ୍ୟ ଥାଇପାରେ ? ୧୯୯୨ ମସିହା ଡ଼ିସେମ୍ବର ଏବଂ ୧୯୯୩ ମସିହା ଜାନୁୟାରୀ ମାସରେ ଦେଶବ୍ୟାପି ଘଟି ଯାଇଥିବା ସାଂପ୍ରଦାୟିକ ଦଙ୍ଗା ବା ମାର୍ଚ୍ଚ ୧୯୯୩ରେ ବମ୍ବେରେ ଘଟିଥିବା ବୋମା ବିସ୍ଫୋରଣ ପଛରେ ଏହି ବିଭେଦକାରୀ ଶକ୍ତିଗୁଡ଼ିକର ପ୍ରଚ୍ଛନ୍ନ ହାତ ଥିଲା । ଯେଉଁ ଶକ୍ତିଗୁଡ଼ିକ ଏଭଳି ଅମାନୁଷିକ ଏବଂ ବର୍ବର କାଣ୍ଡ ଘଟାଇଛନ୍ତି ସେମାନେ ଆମ ଦେଶ ଏବଂ ସମାଜକୁ କି ବିପତ୍ତିରେ ପାକଉଛନ୍ତି ତାହା ସର୍ବସାଧାରଣ ବେଶ୍ ଅନୁଭବ କରିଛନ୍ତି । ଆହୁରି ଦୁଃଖର ବିଷୟ ହେଉଛି ଯେ ସେମାନେ ଆମଦେଶର ଇତିହାସକୁ ମଧ୍ୟ ଏଭଳି ଏକ ଧର୍ମାନ୍ଧତାର ଦୃଷ୍ଟିକୋଣରୁ ପୁନର୍ବାର ଲେଖାଯିବାକୁ ଦାବି କରୁଛନ୍ତି ଏହାଠାରୁ ପରିତାପର ବିଷୟ ଆଉ କ'ଣ ଥାଇପାରେ ?

**ସାଂପ୍ରଦାୟିକତା କେବେ ନଥିଲା :-**

ଆଜି ଆମ ଦେଶରେ ଯେଉଁ ସାଂପ୍ରଦାୟିକତାର ବହ୍ନି ଜଳିଉଠିଛି ତାହା ବେଶୀଦିନର ପୁରୁଣା ନୁହେଁ । ଏଇମାତ୍ର ଦୁଇଶହ ବର୍ଷତଳର କଥା, ଯେତେବେଳେ

ବ୍ରିଟିଶ୍‌ମାନେ ଭାରତକୁ ଆସିଲେ ସେତେବେଳେ ଭାରତରେ ମୋଗଲ ଶାସନ ଚ୍ଛଲିଥାଏ । ୟୁରୋପୀୟ ଐତିହାସିକମାନେ ମୋଗଲ ଶାସନକୁ ଆଖିଆଗରେ ରଖି ଆମ ସମଗ୍ର ଇତିହାସକୁ ଦୁଇଭାଗରେ ବିଭକ୍ତ କରି ହିନ୍ଦୁ ଓ ମୁସଲମାନ ଶାସନର ଯୁଗ ବୋଲି ଆଖ୍ୟାଦେଲେ । ସେତେବେଳେ ସମାଜ ଚିତ୍ରକୁ ଅଖିଆଗରେ ରଖି ହିନ୍ଦୁ-ମୁସଲମାନ ଦୁଇ ସଂପ୍ରଦାୟ ମଧ୍ୟରେ ଅହରହ କଳହ ଲାଗିଥିବାର ଏକ ରୂପ ଚିତ୍ରଣ କରିଥିଲେ । ସେମାନେ ଭୂଲିଯାଇଥିଲେ ଯେ ମୋଗଲ ବା ତୁର୍କ ଶାସନର ଅନେକ ଆଗରୁ ବି ଏ ଦେଶରେ ଅନେକ ଧର୍ମାବଲମ୍ବୀ ଯଥା - ବୌଦ୍ଧ, ଜୈନ, ଶୈବ ଇତ୍ୟାଦି ସଂପ୍ରଦାୟର ଲୋକମାନେ ଏ ଭାରତବର୍ଷରେ ଏକାଠି ଅତି ଆତ୍ମୀୟତା ଭାବରେ ଚଳି ଆସୁଥିଲେ । ଏପରିକି ହିନ୍ଦୁ ସମାଜ ମଧ୍ୟରେ ମଧ୍ୟ ପ୍ରତି ଜାତିର ଅନ୍ୟ ଜାତିଠାରୁ ଏକ ନିର୍ଦ୍ଦିଷ୍ଟ ପରିଚୟ ଥିଲା । ତଥାପି ସମସ୍ତଙ୍କ ଭିତରେ ଐକ୍ୟଭାବ ଏବଂ ସୌହାର୍ଦ୍ଦପୂର୍ଣ୍ଣ ସଂପର୍କ ଥିଲା । ବିଭେଦତା ବା ଶତ୍ରୁତା ନଥିଲା । ଏହି ଭୂମିରେ ସମସ୍ତ ପ୍ରକାର ବିଭିନ୍ନତା ସତ୍ତ୍ୱେ ସମସ୍ତେ ଏକ ସାମାଜିକ ସ୍ନେହ ଡ଼ୋରିରେ ଏବଂ ଭ୍ରାତୃତ୍ୱର ଡ଼ୋରିରେ ବଂଧା ଥିଲେ । ୟୁରୋପୀୟ ଐତିହାସିକମାନେ ପ୍ରଥମଥର ପାଇଁ ଆସି ଆମକୁ ହିନ୍ଦୁ ଓ ମୁସଲମାନ କହି ତାଙ୍କର ମାପକାଠିରେ ମାପିବାକୁ ଲାଗିଲେ । ଏପରିକି ମଧ୍ୟ ଯୁଗ ଓ ପ୍ରାଚୀନ ଯୁଗରେ ଆମର ଧର୍ମ ଜୀବନ ଓ ସମାଜିକ ଜୀବନରେ ଖୁବ୍ କମ୍ ଫରକ ଥିଲା । ଯେତେବେଳେ ସେମାନେ ଆମକୁ ହିନ୍ଦୁ ବା ମୁସଲମାନ ଭାବେ ଅଖ୍ୟାୟିତ କଲେ ତା ପୂର୍ବରୁ ଅମ୍ଭମାନଙ୍କର ଏ ବିଭେଦତାର କୌଣସି ଭାବନା ନଥିଲା । ତେଣୁ ସାଂପ୍ରଦାୟିକତାର ବି କୌଣସି ସମ୍ଭାବନା ନଥିଲା । କିନ୍ତୁ ୟୁରୋପୀୟମାନେ ସତେ ଯେପରି ଅମାକୁ ଉସୁକାଇ ଶିଖାଇଲେ ତୁମେ ହିନ୍ଦୁ ବା ତୁମେ ମୁସଲମାନ' ଏବଂ ଭିନ୍ନ ଭିନ୍ନ ଧର୍ମ ସତେ ଯେପରି ପରସ୍ପରର ବିରୋଧାଚରଣ କରନ୍ତି । ସତେ ଯେମିତି ସେମାନେ ଏକ ଭୂମିରେ ବାସକରିବା ଅସମ୍ଭବ ।

**ସଦ୍‌ଭାବ ହିଁ ଭାରତୀୟତାର ପ୍ରତିକ :-**

ଆମ ସମାଜରେ ଧର୍ମଜୀବନ କେବଳ ମାନବତାବାଦୀ ନଥିଲା, ବରଂ ଏହି ଧାର୍ମିକତା ହିଁ ଅନେକ ସଦ୍‌ଗୁଣ ଯଥା - ଅନ୍ୟର ସୁଖ ଦୁଃଖରେ ନିଜକୁ ସମିଲ୍ କରିବା ଆଦି ଅନେକ ମହତ୍ ଗୁଣର ଏକ ପରମ୍ପରା ଗଢ଼ିଥିଲା । ପରସ୍ପରର ଭାବର ଆଦାନପ୍ରଦାନରୁ ସୃଷ୍ଟି ହୋଇଥିଲା ଭକ୍ତି ଆନ୍ଦୋଳନ- ଯାହା ଉତ୍ତର ଭାରତରୁ ଦକ୍ଷିଣ ଭାରତ ଯାଏଁ ପ୍ରସାରିତ ହୋଇଥିଲା । ତା ସାଙ୍ଗକୁ ସୃଷ୍ଟି ହୋଇଥିଲା ସୁଫିଂ ଆନ୍ଦୋଳନ । ଉଭୟ ହିନ୍ଦୁ ଓ ମୁସଲମାନ ସମାଜର କୁସଂସ୍କାର ସବୁକୁ ମୁଳୋତ୍ପାଟନ କରିବା ପାଇଁ ଏକ ମହନୀୟ ଉଦ୍ୟମ ଏହା କେବଳ ଜାତିପ୍ରଥା ଆଦି କୁ ସଂସ୍କାର ଦୂର

କରି ନଥିଲା ବରଂ ମଣିଷ ସମାଜର ସମାନତା ଉପରେ ବେଶି ଗୁରୁତ୍ୱ ଦେଇ ଥିଲା ହିନ୍ଦୁ ମୁସଲମାନ ଧର୍ମ ଓ ସଂସ୍କୃତିର ମିଳିତ ଉଦ୍ୟମରେ ଏହି ଚେତନାର ଆନ୍ଦୋଳନର କର୍ଣ୍ଣଧାରମାନେ ଥିଲେ - କବୀର, ନାନକ, ରାମଦାସ ଏବଂ ତୁକାରାମ, ହିନ୍ଦୁ-ମୁସଲମାନ ଓ ଶିଖ୍ ସମସ୍ତେ ତାଙ୍କର ବାଣୀ ଗ୍ରହଣ କରୁଥିଲେ ।

କବିର ଧର୍ମ ଭିତରେ ଏକତା'ର ଏକ ନୂତନ ପରମ୍ପରା ସୃଷ୍ଟିକଲେ ସେ ଧର୍ମ, ଜାତି ପ୍ରଥା, ପୂଜାପଦ୍ଧତିର ଉର୍ଦ୍ଧ୍ୱକୁ ଯାଇ ଏକ ମାନବବାଦର ଧର୍ମ ପ୍ରଗ୍ୱର କରିଥିଲେ । ତାଙ୍କର ପରିଚୟ ହିନ୍ଦୁ ବା ମୁସଲମାନ ନଥିଲା ସେଥିରେ ହିନ୍ଦୁ ଓ ମୁସଲମାନମାନଙ୍କପାଇଁ ଜଣେ ସନ୍ଥ-ମହାପୁରୁଷ ଆମ ଭାରତୀୟ ଉଦାରବାଦ ସଂସ୍କୃତି ପରମ୍ପରାର ଜଣେ ପ୍ରବକ୍ତା । କଥିତ ଅଛି ସେ ଜନ୍ମ ହୋଇଥିଲେ ହିନ୍ଦୁ ଘରେ ଏବଂ ଜଣେ ମୁସଲମାନ ପରିବାର ତାଙ୍କର ଲାଳନପାଳନର ଭାର ନେଇଥିଲେ । ତେଣୁ ତାଙ୍କର ମୃତ୍ୟୁପରେ ହିନ୍ଦୁ ମୁସଲମାନମାନଙ୍କ ଭିତରେ କେଉଁ ପ୍ରଥା ଅନୁସାରେ ତାଙ୍କ ମରଶରୀରକୁ ଦାହ କରାଯିବ ବୋଲି ଝଗଡ଼ା ସୃଷ୍ଟି ହୋଇଥିଲା । ସେତେବେଳେ ଜଣେ ଶିଷ୍ୟ କହିଥିଲେ ଯାହା କବିଙ୍କର ଇଚ୍ଛା । କିଛିକ୍ଷଣ ପରେ ମର ଶରୀରରୁ ଲୁଗାକାଢ଼ିଲା ବେଳକୁ ଦେଖାଗଲା ଯେ ତାଙ୍କ ପାର୍ଥିବ ଶରୀରଟି କେତୋଟି ଫୁଲରେ ପରିଣତ ହୋଇଛି । ସେହି ଫୁଲ ଗୁଡ଼ିକ ଦୁଇ ସଂପ୍ରଦାୟର ଲୋକମାନେ ସମାନଭାବେ ବାଣ୍ଟି ନେଇଥିଲେ । ଏହା କହିବାର ଯଥାର୍ଥତା ଏହି ଯେ ଜଣେ ମହାପୁରୁଷ କୌଣସି ଧର୍ମର ବାଡ଼ରେ ଆବଦ୍ଧ ନୁହଁନ୍ତି । ସେ ସମଗ୍ର ମାନବ ସମାଜର କବିର ମାନବଧର୍ମକୁ ଧର୍ମାନ୍ଧତାଠାରୁ ପୃଥକ୍ କରି ଏଭଳି ଏକ ସ୍ତରକୁ ନେଇ ଯାଇଥିଲେ ଯାହା ରାଷ୍ଟ୍ରନୀତି ଭଳି ଗ୍ରହଣ କରା ହୋଇଥିଲା । ଏହା କେବଳ ଏକ ଉଦାହରଣ ନୁହେଁ । ଶିଖ୍ ଧର୍ମର ଗୁରୁଗ୍ରନ୍ଥ ସାହେବ ଲେଖାହେବା ବେଳେ ସେଥିରେ ପଞ୍ଜାବଠାରୁ ମହାରାଷ୍ଟ୍ର ପର୍ଯ୍ୟନ୍ତ ସବୁ ଧର୍ମ ପ୍ରଗ୍ୱରକମାନଙ୍କ ସାରମର୍ମ ସ୍ଥାନ ପାଇଥିଲା । କୌଣସି ଏକ ଧର୍ମ ବା ସଂସ୍କୃତି ଅନ୍ୟ ଏକ ଧର୍ମ ବା ସଂସ୍କୃତିର ସଂସ୍ପର୍ଶରେ ନଆସିଲେ ତା'ଠୁ କିଛି ଶିଖିପାରେ ନାହିଁ ବା ନିଜେ ସମୃଦ୍ଧ ହୋଇପାରେ ନାହିଁ । ଏକ ସଭ୍ୟତା ସମୃଦ୍ଧ ଏବଂ ଗତିଶୀଳ ହେବାପାଇଁ ଅନ୍ୟଠୁ କିଛି ଗ୍ରହଣ କରିବାକୁ ହୁଏ । କବିରଙ୍କ ସମୟରେ ଯେଉଁ ବିଭିନ୍ନ ଧର୍ମ ସମନ୍ୱୟର ପ୍ରକ୍ରୀୟା ସୃଷ୍ଟିହେଲା ତାହା ଆମ ସମାଜକୁ ଯଥେଷ୍ଟ ପ୍ରଗତିଶୀଳ କରାଇଛି । ଜାତିପ୍ରଥାର ବିଲୋପସାଧନ ସହିତ ନୂତନ ଅର୍ଥନୈତିକ ବ୍ୟବସ୍ଥା । ବାଣିଜ୍ୟ କରିବା ପାଇଁ ନୂତନ ବାଣିଜ୍ୟ କେନ୍ଦ୍ରମାନ ସ୍ଥାପନର ଅବକାଶ ସୃଷ୍ଟିକଲା । ପରବର୍ତ୍ତୀ କାଳରେ ଏହି ବାଣିଜ୍ୟ କେନ୍ଦ୍ରଗୁଡ଼ିକ ସହରରେ ପରିଣତ ହେଲା । ପାରମ୍ପରିକ ଜାତିପ୍ରଥାରୁ ମୁକ୍ତ ହୋଇ ଅନେକ ଲୋକ ଏହି ବାଣିଜ୍ୟକେନ୍ଦ୍ରଗୁଡ଼ିକରେ କାମ କରି ନିଜର ଭରଣପୋଷଣ କରିପାରିଲେ । ସୁଫି-ଆନ୍ଦୋଳନର ଫଳାଫଳସ୍ୱରୂପ ଭାରତୀୟ ମୁସଲମାନ ସମାଜ

ଅନେକ ପ୍ରଗତିଶୀଳ ହୋଇପାରିଲା । ଏବେ ମଧ୍ୟ ଭାରତୀୟ ମୁସଲମାନ ମାନଙ୍କର ଆଭିମୁଖ୍ୟ ଭାରତ ବାହାରେ ଥିବା ମୁସଲମାନ ସମାଜଠାରୁ ଅନେକ ଭିନ୍ନ ଭାରତୀୟ ମୁସଲମାନମାନଙ୍କର ସୁଫି ଆନ୍ଦୋଳନ ଦରଘା, ତାଜିଆ ରକ୍ଷାକବଚ ସନ୍ଥମାନଙ୍କ ଉପରେ ବିଶ୍ୱାସ, ବିବାହ ପ୍ରଥା ଓ ଜାତିପ୍ରଥା ଇତ୍ୟାଦି, ମଧ୍ୟରେ ସଂପୂର୍ଣ୍ଣଭାବରେ ଏକ ଭାରତୀୟ ଭାବ ବା ଢ଼ାଞ୍ଚା ରହିଛି । ଏପରିକି ଭାରତ ଭିତରେ ମଧ୍ୟ ଜଣେ କେରଳୀ ମୁସଲମାନ ଏବଂ କାଶ୍ମୀର ମୁସଲମାନ ଭିତରେ ରିତି-ନୀତି, ଗ୍ୱଲିଚଳଣରେ ସଂପୂର୍ଣ୍ଣ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସେମାନଙ୍କ ଭିତରେ ଏକ ମାତ୍ର ସାମଞ୍ଜସ୍ୟ ଅଛି- ତାହା ହେଲା ଉଭୟେ ଭାରତୀୟ ଏବଂ ଉଭୟେ କୋରାନରେ ବିଶ୍ୱାସ କରନ୍ତି ।

ହିନ୍ଦୁ ମୁସଲମାନ ପରସ୍ପର ସଂସ୍କୃତିର ଆଦାନପ୍ରଦାନରେ ଜନ୍ମ ନେଇଛି ଆମର ହିନ୍ଦୁସ୍ଥାନୀ ସଂଗୀତ କଳା ସ୍ଥାପତ୍ୟ ଭାଷା ବିଶେଷକରି ଉର୍ଦ୍ଦୁ ଭାଷା, ଆମ ପୋଷାକ, ଲୋକସଂଗୀତ, ଲୋକନୃତ୍ୟ, ଗଳ୍ପ ଏମିତି କେତେ କ'ଣ । ସେହିଭଳି ବାହାର ସଂସ୍କୃତିରୁ ଆମେ ଲାଭ କରିଥିବା କପଡ଼ାଶିଳ୍ପ, କାଗଜ, ବନ୍ଧୁକର ବାରୁଦ, ଗ୍ଲାସ ଓ ଜରି ତିଆରି କୌଶଳ ଆମ ସଭ୍ୟତାକୁ ସମୃଦ୍ଧ କରିଥିଲା । ବିନିମୟରେ ଅନ୍ୟ ସଭ୍ୟତାକୁ ଆମର ବି ଅନେକ ଅବଦାନ ରହିଛି ତାହା ହେଲା ଭରତୀୟ ଦର୍ଶନ, ଗଣିତ ଓ ଜ୍ୟୋତିର୍ବିଦ୍ୟା,ଆୟୁର୍ବେଦ ଏବଂ ଆହୁରି ଅନେକ କିଛି ।

ଆମ ଦେଶରେ ବସବାସ କରୁଥିବା ସମସ୍ତ ନାଗରିକମାନେ ଯେ ଧର୍ମ ବର୍ଣ୍ଣ ନିର୍ବିଶେଷରେ ପରସ୍ପର ଉପରେ ନିର୍ଭର କରନ୍ତି ତାହା ଗତ ଶତାବ୍ଦୀ ଶତାବ୍ଦୀ ଧରି ଗଢ଼ି ଉଠିଥିବା ବିଭିନ୍ନ ଶିଳ୍ପ ଗ୍ୱରୁକଳା ଓ ବାଣିଜ୍ୟରୁ ପରିଲକ୍ଷିତ ହୁଏ । ଆମର ଦୈନନ୍ଦିନ ଜୀବନରେ ବ୍ୟବହୃତ ଫିରୋଜ ବାଦର କାଚର ଚୁଡ଼ି, ମୋଦ୍ଦୋବାଦର କଂସାବାସନ, ବନାରସର ଶାଢ଼ି ବିଭିନ୍ନ ସଂପ୍ରଦାୟର ଲୋକମାନେ ତିଆରି କରିଥାନ୍ତି । ଏପରିକି ଅଯୋଧ୍ୟାରେ ବ୍ୟବହୃତ ହେଉଥିବା ଚନ୍ଦନ କାଠର ଯୋତା ଏବଂ ଦିଲ୍ଲୀ ରାମଲୀଳାପାଇଁ ବ୍ୟବହୃତ ହେଉଥିବା ରାବଣ ଓ ମେଘନାଥଙ୍କର ପ୍ରତିମୂର୍ତ୍ତି ଆମ ଦେଶର ମୁସଲମାନ କାରିଗରମାନେ ତିଆରି କରନ୍ତି । ଆମ ଦେଶର ଅନେକ ବୁଣାକାର ବାଣି ତିଆରି କାରଖାନାର ଶିଳ୍ପୀ, ସିଲେଇ କରୁଥିବା ଜାରିଗର ଏହି ମୁସଲମାନ ସଂପ୍ରାଦୟର ଅଟନ୍ତି । ସାଂପ୍ରଦାୟିକ ଦଂଗା ଭିଆଇବା ଅର୍ଥ ପରୋକ୍ଷରେ ମୋରଦାବାଦର କଂସାବାସନ, ଶିଳ୍ପ ମିରଟର ଲୁଗାବୁଣା ଶିଳ୍ପ, ଆଲିଗଡ଼ର ତାଲାକାରଖାନା ଫିରୋଜାବାଦର କାଚଚୁଡ଼ି ଶିଳ୍ପ, ଖୁର୍ଜାର ମାଟିପ୍ରାତ୍ର, ଆଗ୍ରା ଓ କାନପୁରର ଚମଡ଼ା ଓ ଯୋତା ଶିଳ୍ପ, ଭଗଲପୁରର ସିଲ୍କ, ବନାରସର ଶାଢ଼ି ଶିଳ୍ପ, ଜୟପୁରର ମୂଲ୍ୟବାନ ପଥର ଶିଳ୍ପ ଏବଂ ଭିଲଓ୍ୱାଡ଼ାର ସୂତାକଳ ସବୁ ନଷ୍ଟ କରିଦେବା

ସହିତ ସମାନ ହେବ । ବମ୍ବେ ମହାନଗରୀର ଦଙ୍ଗାବେଳେ ଅନ୍ୟଶିଳ୍ପ ସହିତ ପ୍ରତିଦିନ ତିଆରି ହେଉଥିବା ରେଡ଼ିମେଡ଼ ପୋଷାକପତ୍ରର ଅଭାବ ଅନୁଭୂତ ହୋଇଥିଲା । କାରଣ ହଜାର ହଜାର ଶିଳ୍ପୀ ଏବଂ କର୍ମୀ ତାଙ୍କ କାର୍ଯ୍ୟ କ୍ଷେତ୍ରକୁ ଆସି ପାରିଲେ ନାହିଁ ଭାରତର ଚଳଚିତ୍ର୍ ଜଗତ ମଧ୍ୟ ଜାତି, ଧର୍ମ ବର୍ଣ୍ଣ ନିରପେକ୍ଷତାର ଆଉ ଏକ ଚରମ ନିଦର୍ଶନ । ଏସବୁ କଳାକାରମାନଙ୍କର ପରିଚୟ କୌଣସି ଜାତି ବା ଧର୍ମ ନୁହେଁ କେବଳ ଭାରତୀୟ । ଆଜି ଯେଉଁମାନେ ଏହି ପରସ୍ପର ସହଯୋଗରେ ପ୍ରବାହମାନ ଏକ ଜୀବନଧାରାକୁ ବିଭିନ୍ନ ସାଂପ୍ରଦାୟିକତା ନାଁରେ ଅବୋରଧ କରୁଛନ୍ତି, ସେମାନେ ଜାଣି ନାହାଁନ୍ତି ଏହାର ଫଳାଫଳ କ'ଣ ହେବ । ଏହା ସତ୍ୟ ଯେ ହିନ୍ଦୁ ହେଉ ବା ମୁସଲମାନ ହେଉ ସେମାନେ ସବୁ ଭାରତୀୟ । ଏହା ଏକ ଐତିହାସିକ ସତ୍ୟ, ସେମାନଙ୍କ ଭିତରେ ଶତ୍ରୁତା କରିବା ଅର୍ଥ ନିଜ ଦେଶର କେତେକ ନାଗରିକଙ୍କ ସହ ଶ୍ରତୁତା ଆଚରଣ କରିବା, ସେମାନଙ୍କ ମନରେ ଭୟ ଆଶଙ୍କା ଓ ହତାଶା ସୃଷ୍ଟି କରିବା । ଗୋଟିଏ ଦେଶ ବା ଜାତି ତାର ଏକ ବିପୁଳ ଅଂଶର ନାଗରିକଙ୍କୁ ଭୟ ହତାଶା ଭିତରେ ରଖିଲେ ତାର ନିଜସ୍ୱ ଉନ୍ନତି ଅସମ୍ଭବ ।

କୌଣସି ଜାତି ବା ଦେଶ ଯଦି ଅନ୍ୟଠାରୁ କିଛି ନଶିଖେ ତେବେ ସେ ମୃତ୍ୟୁ ମୁଖରେ ପଡ଼େ । ଇତିହାସରେ ଏପରି ଅନେକ ସଭ୍ୟତା ବିଲୁପ୍ତ ହୋଇଛନ୍ତି । ପ୍ରବହମାନ ନଦୀ ସଦୃଶ ଗୋଟିଏ ଦେଶ ବା ଜାତିର ସଂସ୍କୃତି ଓ ସଭ୍ୟତା ପ୍ରବହମାନ ନହେଲେ ପୁଷ୍କରିଣୀ ଭଳି ତାହା କଳୁଷିତ ହୁଏ, ପ୍ରବହମାନତାର ମୌଳିକ ଲକ୍ଷ୍ୟ ହେଉଛି ଅନ୍ୟ ସହିତ ସଂଯୋଗ ହେବା ଏବଂ ତାର ଫଳସ୍ୱରୂପ ଏକ ନୂତନ ସୋପାନ ସୃଷ୍ଟି କରିବା । ଭାରତୀୟ ସଂସ୍କୃତି ଓ ସଭ୍ୟତା ଏକ ପ୍ରବହମାନ ସଭ୍ୟତା । ଏକହଜାର ବର୍ଷତଳେ ବା ଦୁଇଶହ ବର୍ଷତଳେ ଆମସଭ୍ୟତା ବା ସଂସ୍କୃତି ଯାହାଥିଲା ଆଜି ତାଠୁଁ ଆମେ ଅନେକ ଉର୍ଦ୍ଧ୍ୱରେ । ସଭ୍ୟତାର ପ୍ରବହମାନତା କେବେହେଲେ ପଛକୁ ଘୁଞ୍ଚେ ନାହିଁ । ତେଣୁ ପଛକୁ ଫେରି ପାଞ୍ଚଶହ ବର୍ଷପୂର୍ବେ ଥିବା ଏକ ଅବସ୍ଥାର ଚିତ୍ରକୁ ନେଇ ଆମର ପରିଚୟ ସାବ୍ୟସ୍ତ କରିବା ଏକ ନିର୍ବୋଧତା । ଗୋଟିଏ ସଭ୍ୟତା ଅନ୍ୟଏକ ସଭ୍ୟତାରୁ କିଛି ଗ୍ରହଣ କରିବାକୁ ଇଚ୍ଛା ନକରିବା ଏକ ଦୁର୍ବଳତା ମାତ୍ର । ଏହା କେବେ ବି ତାର ଶକ୍ତି ନୁହେଁ ବା ଏକ ସୁସ୍ଥ ମନୋଭାବ ନୁହେଁ । ଉଦାହରଣସ୍ୱରୂପ ଆମେ ଯଦି ପାଶ୍ଚାତ୍ୟ ଜଗତର ବିଜ୍ଞାନ ଓ କାରୀଗରି କୌଶଳକୁ ପ୍ରତ୍ୟାଖ୍ୟାନ କରିଥାନ୍ତେ ଆମଦେଶ ଅନେକ ଦୁର୍ବଳ ହୋଇ ପଛରେ ପଡ଼ିଥାନ୍ତା, କିନ୍ତୁ ଅମେ ଆମ ଦ୍ୱାର ଉନ୍ମୁକ୍ତ କରି ରଖିଥିବାରୁ ଆଜି ବିଜ୍ଞାନରେ ଅନେକ ଆଗକୁ ଯାଇପାରିଛୁ । ଆମେ ବୁଝିଛୁ ଆମର ବିକାଶ ଓ ମାନବଜାତିର ବିକାଶ ପରସ୍ପର ପରିପୂରକ ।

**ଭବିଷ୍ୟତ ପାଇଁ ଆହ୍ୱାନ୍ :-**

ଆମକୁ ଏଭଳି ଏକ ଭବିଷ୍ୟତ ଗଢ଼ିବାକୁ ହେଲେ ଆମର ପ୍ରକୃତ ପରିଚୟ କ'ଣ ଜାଣିବାକୁ ହେବ । ଆମର ଲକ୍ଷ୍ୟ କ'ଣ ଆମେ ତାହାକୁ ନେଇ ଗର୍ବ କରିବାକୁ ହେବ - ଏସବୁ ଆମକୁ ବୁଝିବାକୁ ହେବ । କୌଣସି ଫମ୍ପା ଆଦର୍ଶ ପଛରେ ନଯାଇ ଆମର ମୌଳିକ ଆବଶ୍ୟକତାକୁ ବୁଝିବାକୁ ହେବ । ସାମୁହିକ ଭାବେ ଦେଶ ବା ସମାଜର ଦର୍ଶନ, କଳା, ବିଜ୍ଞାନ, ସ୍ଥାପତ୍ୟ ସଂସ୍କୃତିକୁ ସମୃଦ୍ଧ କରିବାକୁ ହେବ । ଆମ ସ୍ୱାଧୀନତା ଓ ଏକତାକୁ ଅକ୍ଷୁର୍ଣ୍ଣ ରଖିବାକୁ ହେବ । ଆସନ୍ତୁ ଆମେ ସମସ୍ତେ ମିଶି କୋଟି କୋଟି ଜନସାଧାରଣଙ୍କର ବାସ୍ତବ ଆଶା ଆକାଙ୍କ୍ଷାକୁ ପୂରଣ କରିବା ଦିଗରେ ଯତ୍ନବାନ ହେବା ଏବଂ ଆମ ସଭ୍ୟତା ଓ ସଂସ୍କୃତିକୁ ସମୃଦ୍ଧ କରିବା ।

## ଧନ ଧାନ୍ୟେ ପୁଷ୍ପେ ଭରା

ଧନ ଧାନ୍ୟେ ପୁଷ୍ପେ ଭରା ଆମର ଏ ବସୁନ୍ଧରା
ଧରା ବୁକେ ଆମ ଦେଶ ସେ ଯେ ଧୃବ ତାରା
କେତେ ସ୍ୱପ୍ନ ନେଇ ଗଢ଼ା ସେ ଯେ
କେତେ ସ୍ମୃତି ଢରା ....
ଖୋଜି ଖୋଜି ଏପରି ଦେଶ ପାଇନି କେବେ କାହିଁ
ସବୁ ଦେଶର ରାଜ ରାଣୀ
ମାଆ ମୋ ଜନ୍ମ ଭୂମି....
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ଆଲୋକରେ ଦିପ୍ତି ଢରା
ବିଜୁଳି ଯେ ଝିଲିମିଲି କୃଷ୍ଣ କଳା ମେଘେ
ବସି କୁଜନେ କିଏ ଘୁମାଏ ସେ ଯେ
କାକଳି ସୁରେ ଯାଗେ ....
ଖୋଜି ଖୋଜି ଏପରି ଦେଶ ପାଇନି କେବେ କାହିଁ
ସୁବ ଦେଶର ରାଜରାଣୀ ମାଆ ମୋ ଜନ୍ମ ଭୂମି....
ଏଇ ମାଆର କେତେ ସ୍ନେହ
କେଉଁଠି ଖୋଜି ପାଇଛ କୁହ
ମାଗୋ ତୋର ଚରଣ ଦୁଇ
ବକ୍ଷେ ତୋଳି ଧରି
ମାଗୋ ତୋହରି କୋଳେ ଜନମ ନେଇ

ତୋ କୋଳେ ଯିବି ମରି .....
ଖୋଜି ଖୋଜି ଏପରି ଦେଶ ପାଇନି କେବେକାହିଁ
ସବୁ ଦେଶର ରାଜରାଣୀ ମା ମୋ ଜନ୍ମ ଭୂମି....

# ରାସ୍ତା ହୈ ଲମ୍ବା ଭାଇ

ରାସ୍ତା ହୈ ଲମ୍ବା ଭାଇ...
ରାସ୍ତା ହୈ ଲମ୍ବା ଭାଇ ମଂଜ଼ିଲ୍ ହୈ ଦୂର୍
ହିମ୍ମତ୍ ସେ ଚଲେଂଗେ ମିଲ୍‌କେ ଜରୂର୍
ହମ୍ ହୈ ନାୟେ ଇନ୍‌ସାନ୍, ହମ୍ ଚଲେଂଗେ ସିନା ତାନ୍
କୋଇ ଡ଼ର୍ ନେହିଁ ଜବ୍ ହମ୍ ମିଲ୍‌କେ ଚଲତେ ହେଁ ।।
ଆଗେ ତୋ କଷ୍ଟ ହୈ ରୋଶନି ନେହିଁ
ରାସ୍ତା ନିକୋଲେଂଗେ ରୂକେଂଗେ ନେହିଁ
ହମ୍ ହୈ ନା ୟେ ଇନ୍‌ସାନ୍, ହମ୍ ଚଲେଂଗେ ସିନାତାନ୍
କୋଇ ଡ଼ର୍ ନେହିଁ ଜବ୍ ହମ୍ ମିଲ୍‌କେ ଚଲତେ ହେଁ ...
ଭୂଖେ ହେଁ ଥକେ ହେଁ କୈସେ ଚଲେଂଗେ
ସାଥିୟୋଁ କି ମଦଦ୍ ସେ ଆଗେ ବଢ଼େଂଗେ
ହମ୍ ହୈ ନାୟେ ଇନ୍‌ସାନ୍, ହମ୍ ଚଲେଂଗେ ସିନାତାନ୍
କୋଇ ଡ଼ର ନେହିଁ ଜବ ହମ୍ ମିଲ୍‌କେ ଚଲତେ ହେଁ.....
ସର୍ଦି ଔର୍ ଗରମି ରାତ୍ ଦିନ୍‌ମେଁ
ଆଖିର୍ ତକ୍ ହମ୍ ଲଢ଼େଂଗେ ହର୍‌ହାଲତ୍ ମେଁ
ହମ୍ ହୈ ନାୟେ ଇନ୍‌ସାନ୍ ହମ୍ ଚଲେଂଗେ ସିନାତାନ୍
କୋଇ ଡ଼ର ନେହିଁ ଜବ୍ ହମ୍ ମିଲ୍‌କେ ଚଲତେ ହେଁ
ରାସ୍ତା ହୈ ଲମ୍ବା ଭାଇ ମଂଜିଲ ହେ ଦୂର୍
ହିମ୍ମତ୍ ସେ ଚଲେଂଗେ ମିଲ୍‌କେ ଜରୁର୍..

*ପ୍ରକାଶକ -*
ହମାରା ଦେଶ ପ୍ରୋଗାମ୍ କମିଟି, ଓଡ଼ିଶା
ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ବର - ୭୫୧ ୦୦୩

***Printed at -***
SRI GURU GOURANGA PRESS
Nayapalli, Bhubaneswar - 751 012
Phone - 55517

Contribution Price - **Rs. 2/-**

# ଆମ ସ୍ୱାଧୀନତା

ହମାରା ଦେଶ



## ଆଲୋଚନା ମାଳା


ପ୍ରସ୍ତୁତି :-

ସର୍ବଭାରତୀୟ ଜନ ବିଜ୍ଞାନ ସଂଗଠନ

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା

ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ

ଭୁବନେଶ୍ୱର - ୭୫୧ ୦୦୩

# ଆମ ସ୍ୱାଧୀନତା

୧୯୪୭ ମସିହା ଅଗଷ୍ଟ ୧୫ତାରିଖରେ ଭାରତ ସ୍ୱାଧୀନ ହେଲା । ସ୍ୱାଧୀନତା ଆନ୍ଦୋଳନ ବେଳେ ଓ ସ୍ୱାଧୀନତା ପରେ ପରେ ଆମ ପାଖରେ ରାମରାଜ୍ୟର ସ୍ୱପ୍ନ ରଖି ଦିଆଗଲା । ଆମେ ଅନେକ ଆଶା ଓ ଭରାସ ରଖିଲେ । ମାତ୍ର ଏବେ ସେ ସ୍ୱପ୍ନ ଓ ଆଶା ବହୁତ ପଛରେ ରହିଗଲାଣି । ବର୍ତ୍ତମାନ ଦେଶ ବଡ଼ ବିପଦସଂକୁଳ ଅବସ୍ଥା ଦେଇ ଗତି କରୁଛି । ସ୍ୱାଧୀନ ହେବାର ୪୬ବର୍ଷ ପରେ ଏଭଳି ଅବସ୍ଥା ସୃଷ୍ଟି ହେବା ଆଶ୍ଚର୍ଯ୍ୟକର ମନେହେଉଛି । ସ୍ୱାଧୀନତା ପାଇବା ଅପେକ୍ଷା, ସ୍ୱାଧୀନତାକୁ ବଞ୍ଚାଇରଖିବା ଅଧିକ କଷ୍ଟକର । ମନେ ରଖିବାକୁ ହେବ ଯେ ବିଦେଶୀ ଶାସକମାନେ ଆମକୁ ଖୁସିରେ ସ୍ୱାଧୀନତା ଦେଇନାହାଁନ୍ତି । ଆମ ସ୍ୱାଧୀନତା ଆନ୍ଦୋଳନ ଏଭଳି ବିପଦପୂର୍ଣ୍ଣ ଅବସ୍ଥା ସୃଷ୍ଟି କଲା, ଯାହାକୁ ସେମାନେ ସହିପାରିଲେ ନାହିଁ ଓ ଦେଶ ଛାଡ଼ି ଚାଲିଯିବାକୁ ବାଧ୍ୟ ହେଲେ । ଆମେ ଯେଉଁ ସ୍ୱାଧୀନତା ପାଇଲେ ବା ଏ ସ୍ୱାଧୀନତା ପାଇ ଆମେ କିପରି ଅଛନ୍ତି, ସେକଥା ବିଚାର କରି ହୃଦୟଙ୍ଗମ କରିବା ଆବଶ୍ୟକ ।

## ପରାଧୀନତାର ପୂର୍ବକଥା

ପାଞ୍ଚଶହ ବର୍ଷତଳେ ଦରିଆପାରିହୋଇ ଭାସ୍କୋଡ଼ାଗାମା ଭାରତରେ ପହଞ୍ଚଲେ । ତାପରେ ଆରମ୍ଭ ହେଲା, ଆମ ପରାଧୀନତାର କାହାଣୀ । ଭାସ୍କୋଡ଼ାଗାମାଥିଲେ ପର୍ତ୍ତୁଗୀଜ । ପର୍ତ୍ତୁଗୀଜମାନଙ୍କୁ ଅନୁସରଣ କରି ହଲାଣ୍ଡ, ଫ୍ରାନ୍ସ ଓ ବ୍ରିଟେନ ବାସୀ ଆମଦେଶକୁ ଆସିଲେ । ଏମାନେ ହେଲେ ସବୁ ସାମ୍ରାଜ୍ୟବାଦୀ ଶକ୍ତି । ସେତେବେଳେ ଭାରତ ଜାତିଭେଦ, ଭଳି ଅନ୍ଧକାରାଚ୍ଛନ୍ନ ଶକ୍ତିମାନଙ୍କ ଦ୍ୱାରା ବିଭକ୍ତ ହୋଇ ରହିଥିଲା । ଭାରତର ପ୍ରାଚୀନ ଗୌରବ ଓ ମହାନତା ଜଳ ଜଳ କରି ଦେଖାଯାଉଥିଲେ ମଧ୍ୟ ଏହି ଅପଶକ୍ତି ଗୁଡ଼ିକର ପ୍ରଭାବ ଅଧିକ ଥିଲା । ସାମ୍ରାଜ୍ୟବାଦୀ ଶକ୍ତିମାନେ ଏହି ଦୁର୍ବଳତାର ସୁଯୋଗ ନେଲେ । ରାଜା-ରାଜା, ସଂପ୍ରଦାୟ-ସଂପ୍ରଦାୟ, ଗୋଷ୍ଠୀ-ଗୋଷ୍ଠୀ ଭିତରେ କଳହ, ବିବାଦ ଓ ଯୁଦ୍ଧ ଲଗାଇବାରେ ଏହି ଶକ୍ତିମାନେ ସଫଳ ହେଲେ । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତରେ ବ୍ରିଟିଶ୍ ଶକ୍ତି ଅଧିକ ଶକ୍ତିଶାଳୀ ହୋଇ ମୁଣ୍ଡ ଟେକିଲେ ।

# ମୌଳିକ ଭିତ୍ତିଭୂମି ନଷ୍ଟ ହେଲା

ଆରମ୍ଭରେ ବ୍ରିଟିଶ୍ ଶକ୍ତି ଭାରତକୁ ଲୁଣ୍ଠନ କରିବାରେ ଲାଗିପଡ଼ିଲେ । ସେମାନଙ୍କ ଲୁଣ୍ଠନର ମାତ୍ରା ବହୁତ ବେଶି ହେଲା । କେବଳ ବଙ୍ଗଳା ପ୍ରଦେଶରୁ ଯେତିକି ଧନ ଲୁଣ୍ଠନ କରାଗଲା, ତାହା ୨୫ବର୍ଷ ପର୍ଯ୍ୟନ୍ତ ବ୍ରିଟିଶ୍ ଶାସକମାନଙ୍କର ଶତକଡ଼ା ୩୦ଭାଗ ଖର୍ଚ୍ଚ ମେଣ୍ଟାଇ ପାରୁଥିଲା । ଏହି ଲୁଣ୍ଠନଯୋଗୁଁ ବଙ୍ଗଳା ପ୍ରଦେଶ ଧ୍ୱଂସ ହୋଇଗଲା । ଲକ୍ଷ ଲକ୍ଷ ଲୋକ ଦୁର୍ଭିକ୍ଷ ଓ ମହାମାରୀରେ ମଲେ । ଏହାର ପରିଣାମ ଯାହା ହେଲା, ଇଂରେଜମାନେ ତାକୁ ସମ୍ଭାଳିବାକୁ ସକ୍ଷମ ହୋଇପାରିଲେ ନାହିଁ । ନିଜର ଶିଳ୍ପବ୍ୟବସ୍ଥାକୁ ବଞ୍ଚାଇବା ପାଇଁ ବ୍ରିଟିଶ୍ ରାଜ ନୂଆ ଉପାୟ ଚିନ୍ତା କଲେ । ବ୍ରିଟିଶ୍ ସରକାରଙ୍କ ବଜାରକୁ ସୁହାଇଲାଭଳି ଫସଲ ଉତ୍ପାଦନ କରିବା ପାଇଁ ଭାରତୀୟ ଚାଷୀମାନଙ୍କୁ ବାଧ୍ୟ କରାଗଲା । ଏହି ଫସଲ ବିଦେଶକୁ ଗଲା ଓ ବିଦେଶରେ ଉତ୍ପାଦନ କରାଯାଉଥିବା ସାମଗ୍ରୀ ଭାରତକୁ ଅଣାଗଲା । ବ୍ରିଟେନ ବିଶ୍ୱର କାରଖାନାରେ ପରିଣତ ହେଲା । ଆମ ନିଜର ହସ୍ତତନ୍ତ ଓ କୁଟୀର ଶିଳ୍ପ ଲୋପ ପାଇଗଲା । ପରେ ଇଂରେଜମାନେ କେତେକ ଦରକାରୀ ଶିଳ୍ପକୁ ଭାରତକୁ ଆଣିବାପାଇଁ ଅନୁମତି ଦେଲେ । କିନ୍ତୁ ଏହି ଶଳ୍ପର ଅସଲ ଚାବିକାଠିଟି ନିଜ ହାତରେ ରଖିଲେ । ଅନ୍ୟଅର୍ଥରେ ସେମାନେ ଶିଳ୍ପପାଇଁ ଅବାଶ୍ୟକ କଳକବ୍‌ଜା ବ୍ରିଟେନରୁ ଆମଦାନୀ କଲେ । ବହୁତ ଚତୁରତାର ସହ ସେମାନେ ଏସବୁର ନିଷ୍ପତ୍ତି ନେଉଥିଲେ । ଭାରତ ଯେପରି ସବୁଦିନ ସେମାନଙ୍କ ଉପରେ ନିର୍ଭରକରି ଚଳିବ ସେଥିପାଇଁ ସେମାନେ ଭିତରିଆ ଉଦ୍ଦେଶ୍ୟ ରଖିଥିଲେ । ସେମାନଙ୍କ ପାଇଁ ଭାରତଥିଲା ବିଟ୍ରିଶ୍ ସମ୍ରାଟଙ୍କ ମୁକୁଟର ମଣି ।

ଆମଦେଶରେ ଚାଲିଥିବା ଔପନିବେଶିକ ଶାସନ ଯୋଗୁଁ ଆମ ଅର୍ଥନୀତ ବିଶ୍ୱ ଅର୍ଥନୀତିସହ ସାମିଲ ହୋଇଗଲା । ଏହା ଦ୍ୱାରା ଆମର ପ୍ରଭୂତ କ୍ଷତି ଘଟିଛି । ବିଶ୍ୱଅର୍ଥନୀତି ସାମ୍ରାଜ୍ୟବାଦ ଶକ୍ତିମାନଙ୍କଦ୍ୱାରା ବ୍ୟବହୃତ ହେଉଥିଲା ଓ ନିୟନ୍ତ୍ରିତ ହେଉଥିଲା । ଏହା ଦ୍ୱରା ଆମେ ସବୁବେଳେ ସେମାନଙ୍କୁ ଆଶ୍ରୟ କରି ରହିଲେ । ଆମ ଦେଶର ସମ୍ପଦ ବ୍ରିଟେନକୁ ଚାଲାଣ ହେଲା । ମାତ୍ର ବ୍ରିଟେନରୁ କିଛି ଏଠାକୁ ଆସିଲା ନାହିଁ । ଏହା ଦ୍ୱାରା, ଆମ ଦେଶରେ ଦାରିଦ୍ର୍ୟ ବଢ଼ିଲା । ଆମ ନିଜସ୍ୱ ଶିଳ୍ପ ନଷ୍ଟ ହେଲା । ଇଂରେଜ ସରକାର ସବୁ ଦେଖି ନଦେଖିଲାପରି ରିହିଲେ । ଦେଶର ଦୁର୍ଗତି ଅସହ୍ୟ ହେଲା । ଭାରତବାସୀଙ୍କ ମନରେ ଏଥିପାଇଁ ଥିବା ଅଶନ୍ତି ଓ କ୍ରୋଧ କୁହୁଳି କୁହୁଳି ଶେଷରେ ତାହା ଜଳି ଉଠିଲା । ଜାତୀୟ ଆନ୍ଦୋଳନ ଆରମ୍ଭ ହେଲା । ନିଜର ଅଧିକାର ସାବ୍ୟସ୍ତ କରିବା ପାଇଁ ଭାରତବାସୀ ବାହାରି ଆସିଲେ ।

ବିଦେଶୀ ଜିନିଷପତ୍ର ବର୍ଜନ, ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ ଆଦି ମୁଣ୍ଡ ଟେକି ଉଠିଲେ । ଦେଶସାରା ସ୍ୱାଧୀନତା ପାଇଁ ସଂଗ୍ରାମ ଜାଗିଉଠିଲା । ଏସବୁ ବ୍ରିଟିଶ୍ ସରକାର ସହିପାରିଲେ ନାହିଁ । ଦେଶଛାଡ଼ି ଚ୍ଚାଲିଯିବା ପାଇଁ ସେମାନେ ବାଧ୍ୟ ହେଲେ । ୧୯୪୭ ମସିହା ଅଗଷ୍ଟ ୧୫ତାରିଖରେ ଭାରତ ସ୍ୱାଧୀନ ହେଲା । ଆମଦେଶ ସ୍ୱାଧୀନ ହେଲା ପରେ ପରେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଅନେକ ଦେଶରେ ସ୍ୱାଧୀନତାର ସଂଗ୍ରାମ ଆରମ୍ଭ ହୋଇଗଲା । ଇଉରୋପରେ ଅଳ୍ପ କେତେକ ଦେଶ, ଯୁକ୍ତରାଷ୍ଟ୍ର ଆମେରିକା ଓ ଜାପାନ ନିଜ ନିଜର ସ୍ୱାର୍ଥକୁ ଜଗିଲେ । ନିଜ କ୍ଷମତା ବଳୟ ଭିତରେ ରଖିବାପାଇଁ ସେମାନେ ସମଗ୍ର ବିଶ୍ୱକୁ ଭାଗ କରିଦେଲେ ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଉପନିବେଶବାଦୀରାଷ୍ଟ୍ରମାନେ ଖଣ୍ଡ ଖଣ୍ଡ ହୋଇଗଲେ । ମାତ୍ର ଉପନିବେଶଗୁଡ଼ିକରେ ସମ୍ବଳବଳରେ ନିଜ ନୀତିକୁ ସମୃଦ୍ଧ କରି ରଖିଲେ । ନିଜ ନିଜର ନ୍ୟସ୍ତ ସ୍ୱାର୍ଥକୁ ବଜାୟ ରଖିବା ପାଇଁ ଶୋଷଣର ଉପାୟ ଖୋଜି ବାହାର କଲେ । ନୂଆ ପ୍ରକାରର ଔପନିବେଶିକତା ପାଇଁ ଏକ ଆନ୍ତର୍ଜାତିକ ଶୃଙ୍ଖଳାର ଜାଲ ବିଛାଇଲେ ।

## ଔପନିବେଶିକ ଲୁଣ୍ଠନ

ବହୁରାଷ୍ଟ୍ରୀୟ କଂପାନୀମାନେ ବିଦେଶୀ ପୁଞ୍ଜି ଲଗାଇ ଚ୍ଚାଲିଲେ । ପୂର୍ବ ଉପନିବେଶଗୁଡ଼ିକ ଋଣ ଦେଲେ ଓ ସୁଧ ଆଦାୟ କରି ଲାଭ ଉଠାଇଲେ । ବୈଷୟିକ ଜ୍ଞାନ କୌଶଳ ଯୋଗାଇ ଫିସ୍ ଆଦାୟ କଲେ । ଏସବୁ ଥିଲା ନୂତନ ଢ଼ଙ୍ଗର ଶୋଷଣ । ସମୟ ଗଡ଼ି ଚ୍ଚାଲିଲା । ତା ସଂଗେ ସଂଗେ ଆମଦେଶର ସମ୍ବଳ ବାହାରକୁ ଚ୍ଚାଲାଣ ହୋଇଚ୍ଚାଲିଲା । ଏସବୁର ପରିଣାମ ସମ୍ବନ୍ଧରେ ଆମେ କେବେ ଚିନ୍ତା କରିଛେ କି ? ଆମେ ଅନୁମାନ କରିପରିବା ଯେ ଶିଳ୍ପ ଓ ବାଣିଜ୍ୟର ଲାଭ ବିଭିନ୍ନ ଲୁଚ୍ଚାଚ୍ଚୋରା ରାସ୍ତାଦେଇ ବିଦେଶକୁ ଚ୍ଚାଲାଣ କରାଯାଉଛି । ଆନୁମାନିକ ହିସାବରୁ ଜଣାଯାଇଛି ଅଶୀଦଶକର ପ୍ରାରମ୍ଭରେ ତୃତୀୟ ବିଶ୍ୱର ଦେଶମାନଙ୍କରୁ ଯେତେସମ୍ବଳ ନିଆଯାଇଛି, ସେ ସବୁର, ଲାଭ, ରାୟାଲ୍‌ଟି, ସୁଧ ଓ ଫିସ୍‌ର ମୋଟ ପରିମାଣ ଅନ୍ୟୁନ ୧୫,୦୦୦ କୋଟି ଡ଼ଲାର ହେବ । ମୋଟା ବୁଦ୍ଧିରେ ହିସାବ କଲେ, ଏହା ହେଉଛି, ସେ ସମୟରେ ଭାରତବାସୀଙ୍କ ମୋଟ ବାର୍ଷିକ ଆୟ ସହ ସମାନ ।

କଥାଟା ଏତିକିରେ ଶେଷ ହେଲା ନାହିଁ । ଆମର ପୂର୍ବ ବଦେଶୀ ଶାସକମାନେ ଧନସଂପଦ ନେଇ ଚ୍ଚାଲିଲେ । ସବୁ କିନ୍ତୁ ଆମପାଇଁ ଦୁର୍ବୋଧ୍ୟ ହୋଇରହିଲା ।

ନିମ୍ନରେ ଦିଆଯାଇଥିବା ଉଦାହରଣରୁ ଏସବୁ ବୁଝିହେବ । ସେମାନେ ବିଶ୍ୱର ବାଣିଜ୍ୟ କାରବାର, ଯୋଗାଣ ବ୍ୟବସ୍ଥା ଓ ବଜାର ଚାହିଦା ନିଜ ଢ଼ଙ୍ଗରେ ପରିଚାଳନା କଲେ । ସେମାନେ ଏପରି ଯୋଜନା କଲେ ଯେପରି ଆମେ ରପ୍ତାନୀ କରୁଥିବା କୃଷିଜାତ ଦ୍ରବ୍ୟ ଓ ଖଣିଜପଦାର୍ଥର ମୂଲ୍ୟ ଧିରେ ଧିରେ ବଢ଼ିବ । କିନ୍ତୁ ଆମେ ବିଦେଶରୁ ଆମଦାନୀ କରୁଥିବା ବିଦେଶୀ କଳ କବଜା ଓ ବିଦେଶୀ ସାମଗ୍ରୀର ମୂଲ୍ୟ ଯଥେଷ୍ଟ ଅଧିକ ହେବ । ଏହା ଦ୍ୱାରା ଅମଦାନୀ ଅନୁସାରେ ଆମକୁ ଅଧିକ ରପ୍ତାନୀ କରିବାକୁ ପଡୁଛି । କ୍ୟୁବାର ରାଷ୍ଟ୍ରପତି ଫିଡ଼େଲ କେଷ୍ଟ୍ରୋ ଥରେ ଏ ସଂକ୍ରାନ୍ତରେ ଛୋଟ ହିସାବଟିଏ ଦେଖାଇଥିଲେ ଯେ ୧୯୬୦ ମସିହାରେ ଏକ ଟନ୍ ଚିନି ରପ୍ତାନି କଲେ ଗୋଟିଏ ଟ୍ରାକ୍ଟର ଅମାଦାନୀ କରା ଯାଇପାରୁଥିଲା । କିନ୍ତୁ ୧୯୮୫ ମସିହାରେ ସେହି ସମାନ ଟ୍ରାକ୍ଟରଟି ପାଇଁ ଅଧିକ ଟନ୍‌ର ଚିନି ରପ୍ତାନୀ କରିବାକୁ ପଡ଼ିଲା । କାରଣ ଟ୍ରାକ୍ଟର ଦାମ ବଢ଼ିଚାଲିଥିଲା ବେଳେ, ସେହି ଅନୁପାତରେ ଚିନିର ଦାମ୍ ବଢ଼ିନଥିଲା ।

ସାମ୍ରାଜ୍ୟବାଦ ଶକ୍ତିମାନଙ୍କ ଶୋଷଣ ଓ ପକ୍ଷପାତିତାର ଏହା ଗୋଟିଏ ମାତ୍ର ଛୋଟ ଉଦାହରଣ ।

ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଶ୍ରମ ଉପରେ ନିର୍ଭର କରି ଉତ୍ପାଦିତ ହେଉଥିବା ସମଗ୍ରୀ,ଯଥାଃ- ପୋଷାକ, ଯୋତା ଆଦିର ରପ୍ତାନୀ ଉପରେ ଦୃଢ଼ କଟକଣା ରଖାଯାଇଛି । ଉନ୍ନତ ଦେଶମାନଙ୍କଠାରୁ ଆମଦାନୀ ହେଉଥିବା ଜିନିଷଗୁଡ଼ିକ ଉପରେ ବିଦେଶୀ ଶୁଳକ ଅଧିକ ପଡ଼ିଥାଏ । ମାତ୍ର ଆମଦେଶରୁ ରପ୍ତାନୀ ହେଉଥିବା ସାମଗ୍ରୀଗୁଡ଼ିକ ଉପରେ କମ୍ ଶୁଳକ୍ ପଡ଼ିଥାଏ । ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ଦେଉଥିବା ସୁଧହାର ଆନ୍ତର୍ଜାତିକ ସ୍ତରର ସୁଧର ହାରଠାରୁ ବେଶି । ତୃତୀୟ ବିଶ୍ୱର ଦେଶମାନଙ୍କରୁ ଉନ୍ନତ ଦେଶମାନଙ୍କୁ ଯାଉଥିବା ଶ୍ରମିକମାନେ ଉପଯୁକ୍ତ ବ୍ୟବହାର ପାଆନ୍ତି ନାହିଁ । ଜାତିଗତ, ବର୍ଣ୍ଣଗତ ପାର୍ଥକ୍ୟ ନେଇ ସେମାନଙ୍କୁ ଅବମାନନା ଓ ଅବହେଳା କରାଯାଏ । ଏକଥା ସମସ୍ତଙ୍କୁ ଜଣା । ଯୁକ୍ତରାଷ୍ଟ୍ର ଆମେରିକା ଦ୍ୱାରା ପ୍ରସ୍ତୁତ ହୋଇଥିବା ୧୯୯୧ର ମାନବସମ୍ବଳ ରିପୋର୍ଟ ଅନୁସାରେ ଜାତିଗତ ପାର୍ଥକ୍ୟ ବୋଧ ଦୃଷ୍ଟିରୁ ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକୁ ଅନେକ କ୍ଷତି ସହିବାକୁ ପଡୁଛି । ହିସାବରୁ ଦେଖାଯାଉଛି ଏହିକ୍ଷତିର ପରିମାଣ ବର୍ଷକୁ ପ୍ରାୟ ୫୦/୦୦୦ କୋଟି ଡ଼ଲାର । ମୋଟା ମୋଟି ଭାବରେ ଉନ୍ନତ ଦେଶମାନଙ୍କଠାରୁ ଆମେ ଆଣୁଥିବା ଋଣର ଏହା ପ୍ରାୟ ଅଧା ଅଟେ । ଏସବୁକୁ ବିଚାର କଲେ ଜଣାପିବ ଯେ ପୁରୁଣା ସାମ୍ରାଜ୍ୟବାଦ ବଦଳରେ ନୂଆ ସାମ୍ରାଜ୍ୟବାଦ ମୁଣ୍ଡ ଟେକିଛି । ଧନୀ ରାଷ୍ଟ୍ରମାନେ ଆନ୍ତର୍ଜାତିକ ଅର୍ଥନୀତିକୁ ନିଜ ହାତମୁଠାରେ ରଖି ମନଇଛା ନିୟନ୍ତ୍ରଣ ଓ ପରିଚାଳନା କରୁଛନ୍ତି ।

# ତୃତୀୟ ବିଶ୍ୱ ପାଇଁ ଆହ୍ୱାନ

ତୃତୀୟ ବିଶ୍ୱର ଇଚ୍ଛାନୁସାରେ କିନ୍ତୁ ସବୁକଥା ହେଲାନାହିଁ । ବିକାଶପୂର୍ଣ୍ଣ ରାଷ୍ଟ୍ରମାନେ ଏହାର ପ୍ରତିରୋଧ କଲେ । ଏହା ଦ୍ୱାରା ତୃତୀୟ ବିଶ୍ୱର ରାଷ୍ଟ୍ରମନଙ୍କ ଭିତରେ ଜାତୀୟତାବୋଧ ବଢ଼ିଛି । ଜିଦ୍‌ଖୋର ମନୋଭାବ ବି ବଢ଼ିଛି । ଅନେକ ଦେଶ ସେମାନଙ୍କ ଅର୍ଥନୀତିକୁ ସମ୍ପୂର୍ଣ୍ଣ ମୁକ୍ତ କରିଦେବା ପାଇଁ ମନା କରିଦେଇଛନ୍ତି । ଭାରତ ଏସବୁକ୍ଷେତ୍ରରେ ବେଶି ଜିଦ୍‌ଖୋର ବୋଲି ଉନ୍ନତ ଦେଶମାନେ ଭାରତକୁ ନିନ୍ଦା କରୁଛନ୍ତି । ସ୍ୱାଧୀନତା ଆନ୍ଦୋଳନ ବେଳେ ଦୁଇଟି ସ୍ଲୋଗାନ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା- ଗୋଟିଏ ହେଲା, ବିଦେଶୀ ଜିନିଷ ବର୍ଜନ ଓ ଅନ୍ୟଟି ହେଲା, ସ୍ୱଦେଶୀ ସାମଗ୍ରୀର ଉତ୍ପାଦନ ବର୍ଦ୍ଧନ । ଆମର ଏହି ସ୍ୱାଦେଶୀ ମନୋଭାବର ପ୍ରଭାବ ସ୍ୱାଧୀନ ଭାରତରେ ପ୍ରଥମ ଅବସ୍ଥାରେ ଯଥେଷ୍ଟଭାବରେ ଅନୁଭବ ହେଲା । ବିଦେଶୀ ଜିନିଷ ଆମଦାନୀପାଇଁ ସ୍ୱଧୀନଭାରତରେ ଅନେକ କଟକଣା କରାଗଲା। ଦେଶରେ ନିଜସ୍ୱ ଶିଳ୍ପ ଓ କୃଷିନୀତି ପ୍ରଣୟନ କରାଯାଇ ଆବଶ୍ୟକ ସାମଗ୍ରୀ ଉତ୍ପାଦନ କରିବା ପାଇଁ ଜୋର୍ ଦିଆଗଲା ।

ଏଥିପାଇଁ ଦେଶୀୟ ବଜାର ଆମକୁ ଅଧିକ ପ୍ରେରଣା ଯୋଗାଇଲା । ଦେଖିବାକୁ ଗଲେ ଆମ ଦେଶର ବଜାର ବହୁତ ବଡ଼ । ଏହା ଏକ ଉପମହାଦେଶର ବଜାର । ତେଣୁ ଆତ୍ମନିର୍ଭରଶୀଳ ହେବାପାଇଁ ଦେଶୀୟ ମାର୍କେଟର ବିକାଶ କରାଇବା ଏକ ବାସ୍ତବ ତଥା ଉଚିତ୍ ପଦକ୍ଷେପ ।

ବିଦେଶୀ ପୁଞ୍ଜି ଲଗାଣ ଓ ପରିଚାଳନା ଉପରେ ଭାରତରେ କଟକଣା ଜାରି ହେଲା । ବ୍ୟାଙ୍କ ଓ ଜୀବନ ବୀମା ସଂସ୍ଥା ଗୁଡ଼ିକୁ ଜାତୀୟକରଣ କରାଗଲା । ବାହାରୁ କି ପ୍ରକାର ବୈଷୟିକ କାରିଗରୀ କୌଶଳ ଅଣାଯିବ ତାହା କଡ଼ା କଡ଼ି ଭାବରେ ଦେଖାଗଲା । ବୈଷିୟିକ ଜ୍ଞାନରେ ଆତ୍ମନିର୍ଭର ହେବାପାଇଁ ବିଶେଷ ଗୁରୁତ୍ୱ ଦିଆଗଲା ।

ପାଶ୍ଚାତ୍ୟ ଦେଶଗୁଡ଼ିକର ମାଗଣା ଉପଦେଶର ଷଡ଼ଯନ୍ତ୍ରକୁ ଭାରତ ଏଡ଼ାଇ ଦେଲା । ଭାରତ ନିଜେ ଭାରି ତଥା ମୌଳିକ ଶିଳ୍ପ ଗୁଡ଼ିକୁ ଗଢ଼ିବା ପାଇଁ ନିଷ୍ପତ୍ତି ଗ୍ରହଣ କଲା। ଆଗରୁ ଆମେ ପାଶ୍ଚାତ୍ୟ ଦେଶମାନଙ୍କ ଉପରେ କଳ କବ୍‌ଜାପାଇଁ ସମ୍ପୂର୍ଣ୍ଣରୂପେ ନିର୍ଭର କରିଆସିଥିଲେ । ମାତ୍ର ସପ୍ତଦଶ ଶତାବ୍ଦୀର ଆରମ୍ଭରେ ଆମେ ଆମ ନିଜର ଯନ୍ତ୍ରପାତି ତିଆରି କରିବାକୁ ଆରମ୍ଭ କଲେ । ଉନ୍ନତ ଦେଶମାନଙ୍କ ଦୃଷ୍ଟିରେ ଭାରତ ଆଉ ଗୋଟିଏ ଗୁରୁତର ଦୋଷ କଲା । ରାଷ୍ଟ୍ରାୟତ୍ତ ସଂସ୍ଥା ବା

ପବ୍ଲିକ ସେକ୍ଟର ସ୍ଥାପନ କରିବା ପାଇଁ ସରକାରୀ କଳକୁ ବ୍ୟବହାର କରାଗଲା । ଏଥିପାଇଁ ସରକାରୀ କଳ ସାହାଯ୍ୟରେ ସମ୍ବଳ ସଂଗ୍ରହ କରିବା ଓ ସମ୍ବଳ ଯୋଗାଇବା ଆରମ୍ଭ ହେଲା । ରାଷ୍ଟ୍ରାୟତ୍ତ ସଂସ୍ଥା ସ୍ଥାପିତ ହୋଵ ଦ୍ବାରାପରିବହନ ଶକ୍ତି ଯୋଗାଯୋଗ, ଜଳସେଚନ, ଇତ୍ୟାଦି ପାଇଁ ଭିତ୍ତିଭୂମି ପଡ଼ିଲା । ଏହା ଦ୍ବାରା ଭାରି ଓ ମୌଳିକ ଶିଳ୍ପ ସ୍ଥାପନ ପାଇଁ ନୂଆ ବାଟ ଫିଟିଲା ଓ ଜାତୀୟ ବୈଷୟିକ ଜ୍ଞାନର ସାମର୍ଥ୍ୟ ପାଇଁ ଭିତ୍ତିଭୂମି ସୃଷ୍ଟିହେଲା । ଭାରତର ନିଜସ୍ୱ ଯୋଜନା କ୍ଷେତ୍ରରେ ପାଶ୍ଚାତ୍ୟ ଦେଶଗୁଡ଼ିକର ଆଦର୍ଶ କୌଣସି ପ୍ରଭାବ ପକାଇ ପାରିଲା ନାହିଁ । ସ୍ୱାଧିନତା ଲାଭ ପାଇଁ ହୋଇଥିବା ଜାତୀୟ ଆନ୍ଦେଳନ ରୁ ଜନ୍ମ ନେଇଥିବା ଜାତୀୟ ସହମତର ଏହା ଏକ ପରିପ୍ରକାଶ ମାତ୍ର ।

ବ୍ରିଟିଶ ରାଜତ୍ୱ ସମୟରେ ବ୍ରିଟିଶ୍ ସରକାର ଆର୍ଥିକ କ୍ଷେତ୍ରରେ ଦ୍ରୁତ ପ୍ରଗତି ଆଣିବା ପାଇଁ ବେଶି କିଛି କରିବାକୁ ମନା କଲେ । ଏହା ହିଁ ବ୍ରିଟିଶ ସରକାର ବିରୋଧରେ ଏକ ମୁଖ୍ୟ ସମାଲୋଚନା । ଜାତୀୟତାବାଦୀମାନେ ସ୍ୱାଧିନତା ପରେ ଏହି ଆର୍ଥିକ ପ୍ରଗତି ପାଇଁ ଅଧିକରୁ ଅଧିକ ଗୁରୁତ୍ୱ ଦେବାକୁ ସ୍ଥିର କଲେ । ସ୍ୱାଧୀନତା ପାଇବାର ୧୦ବର୍ଷ ପୂର୍ବରୁ ଏକ ଜାତୀୟ ଯୋଜନା କମିଟି ତିଆରି କରାଯାଇ ଥିଲା । ଅନେକ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ, ଏକଥା ସ୍ୱୀକାର କରାଯାଇଥିଲା ଯେ ବ୍ରିଟିଶ ସରକାର ଭାରତର ଜାତୀୟ ଆନ୍ଦୋଳନର ମୁଖ୍ୟ ସ୍ରୋତ ଦ୍ୱାରା ବହୁଳ ଭାବରେ ପ୍ରଭାବିତ ହୋଇଛି ।

ଏ ଶତାବ୍ଦୀର ଶେଷ ଆଡ଼କୁ ଅନେକ ବିକାଶଶୀଳ ଦେଶ ମିଳିତ ଭାବେ ସମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକର ଷଡ଼ଯନ୍ତ୍ରମୂଳକ ଆହ୍ୱାନକୁ ବିରୋଧ କରିବାକୁ ଆରମ୍ଭ କଲେ । ତୈଳ ଉତ୍ପାଦନ କରୁଥିବା ଦେଶଗୁଡ଼ିକ ସେମାନଙ୍କ ତୈଳର ଉଚିତ୍ ମୁଲ୍ୟ ପାଇଁ ସଂଘ ଗଠନ କରି ଦାବି କଲେ । ତୃତୀୟ ବିଶ୍ୱର ଦେଶ ଗୁଡ଼ିକ ଗୋଷ୍ଠୀ ନିରପେକ୍ଷ ଦେଶଭାବରେ ଏକତ୍ରିତ ହେଲେ । ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥାର ପୁର୍ନ ଗଠନ ପାଇଁ ଦାବୀ କରିବା ସକାଶେ ଏକ ମୁଖ୍ୟ ଶକ୍ତି ଭାବରେ ସେମାନେ ଛିଡ଼ା ହେଲେ । ଏହି ଦାବି ସାମ୍ରାଜ୍ୟବାଦୀ ଶକ୍ତି ଗୁଡ଼ିକ ପାଇଁ ଥିଲା ଏକ ଶକ୍ତ ଧକ୍କା । ଏହି ଦାବିରେ ଥିଲା ତୃତୀୟ ବିଶ୍ୱରୁ ଉତ୍ପାଦିତ ହେଉଥିବା ସାମଗ୍ରୀର ଉଚିତ୍ ମୂଲ୍ୟ ସ୍ଥିର କରିବା, ଋଣ ଭାର ହ୍ରାସ କରିବା, ରିହାତି ଦରରେ ଅଧିକ ସହାୟତା ଯୋଗାଇବା, ବୈଷୟିକ ଜ୍ଞାନ କୌଶଳ ଓ ଗଣ ମାଧ୍ୟମରେ ଆତ୍ମନିର୍ଭର ଶୀଳତା ବୃଦ୍ଧି କରାଇବା । ଆନ୍ତର୍ଜାତୀକ ଆର୍ଥିକ ସଂସ୍ଥା ଯଥା ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କ ଆଦିର କାର୍ଯ୍ୟଧାରାକୁ ଗଣତାନ୍ତ୍ରିକ କରାଇବା ।

**ବିକାଶ ଶୀଳ ଦେଶଗୁଡ଼ିକ ଔପନିବେଶିକ ଶକ୍ତିଗୁଡ଼ିକୁ ଆହ୍ୱାନ ଦେଲେ କିପରି ?**

(୧) ଏ କଥା ସତ ଯେ ସେମାନଙ୍କର ନିଜ ନିଜର ସ୍ୱାର୍ଥ ଥିଲା । ତା ଛଡ଼ା ଏହି ଦେଶଗୁଡ଼ିକର ଉଗ୍ରଜତୀୟତାବାଦୀ ଆନ୍ଦୋଳନମାନେ ତୀବ୍ର ଭାବରେ ମୁଣ୍ଡ ଟେକି ଉଠୁଥିଲେ ।

(୨) ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଆନ୍ତର୍ଜାତିକ ସ୍ତରରେ ରାଜନୈତିକ ସ୍ଥିତି ବଦଳି ଗଲା ।

(୩) ସାମ୍ରାଜ୍ୟବାଦୀ ରାଷ୍ଟ୍ରଗୁଡ଼ିକ ପରସ୍ପରକୁ ବିରୋଧ କଲେ । ମାତ୍ର ସେମାନଙ୍କର ତୃତୀୟ ବିଶ୍ୱ ଦେଶଗୁଡ଼ିକ ପ୍ରତି ସମବେଦନା ଥିଲା । ଏହି ଅବସ୍ଥାଟି ଭାରତ ଭଳି ଦେଶମାନଙ୍କ ପକ୍ଷେ ଅପେକ୍ଷାକୃତ ନୂଆ ପଥ ଅନୁସରଣ କରିବା ପାଇଁ ବାଟ ଫିଟାଇଲା ।

## ନୂତନ ଆନ୍ତର୍ଜାତିକ ନୀତି

ଏହା ଏକ ପାଲଟା ଆକ୍ରମଣ । ୟୁରୋପ ରେ ସାମ୍ରାଜ୍ୟବାଦୀ ଦେଶ ଗୁଡ଼ିକର ପତନ ଘଟିଲା। ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ସାରା ବିଶ୍ୱରେ ଏକ ଆକ୍ରମଣାତ୍ମକ ଅଭିମାନ ଚଳାଇଲେ । ବିକାଶଶୀଳ ଦେଶଗୁଡ଼ିକ ଯେଉଁ ନୂତନ ଆନ୍ତର୍ଜାତିକ ଅର୍ଥନୀତି ଆଣିବା ପାଇଁ ଅନେକ ବାଟ ଆଗେଇ ଯାଇଥିଲେ ସେ ସବୁକୁ ସାମ୍ରାଜ୍ୟବାଦୀ ଶକ୍ତିମାନେ ଉଡ଼ାଇ ଦେବାକୁ ଚେଷ୍ଟା କଲେ । ଆନ୍ତର୍ଜାତିକ ଅର୍ଥନୀତି କୁ ନିଜ ଅନୁସାରେ ଚଳାଇବା ଓ ଅନ୍ୟଦେଶର ଅର୍ଥନୀତି ଉପରେ ପ୍ରଭାବ ବିସ୍ତାର ପାଇଁ ସାମ୍ରାଜ୍ୟବାଦୀ ଶକ୍ତିମାନେ ଯେ କୌଣସି ସ୍ତରକୁ ଓହ୍ଲାଇବା ପାଇଁ ପ୍ରସ୍ତୁତ ।

ଇରାକ ବିରୋଧରେ ଆମେରିକାର ଯୁଦ୍ଧ ଘୋଷଣା ଏହାର ଏକ ଜ୍ୱଳନ୍ତ ଉଦାହରଣ । ସାମ୍ରଜ୍ୟବାଦୀ ଶକ୍ତିମାନେ କେଉଁଠି ବଳ ପ୍ରୟୋଗ କରୁଛନ୍ତି ତ ଆଉ କେଉଁଠି ଅର୍ଥନୀତି ଉପରେ ଚାପ ପାକଉଛନ୍ତି । ଆଉ କେଉଁଠି ସେମାନଙ୍କ ବଶ୍ୟତା ସ୍ୱୀକାର କରିବା ପାଇଁ ଅନ୍ୟ ଉପାୟରେ ବାଧ୍ୟ କରୁଛନ୍ତି । ଏହା ଛଡ଼ା ତୃତୀୟ ବିଶ୍ୱର ଦେଶମାନଙ୍କରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପଣ୍ଡିର ଅନେକ ବିତରଣ ଅଧିକାର ସେମାନଙ୍କର ଅଛିବୋଲି ସେମାନେ ମନେ କରନ୍ତି ।

ପାଞ୍ଚଶହ ବର୍ଷ ତଳେ ଗୋରା ସାହେବ ମାନେ ଆମ ଦେଶକୁ ଆସିଲେ ଅନେକ ଲୁଣ୍ଠନ ଅତ୍ୟଗ୍ରର କଲେ । କ୍ରମେ ସେମାନଙ୍କର ଜାତୀୟ ପ୍ରଭାବ ବିସ୍ତାର

କରି ଆମ ଦେଶର ସବୁକିଛି ନିଜ ଅକ୍ତିଆରକୁ ନେଇଆସିଲେ । ଆମକୁ ସେମାନଙ୍କ କାମରେ ଲଗାଇବା ପଇଁ ଲାଗିଲେ । ଗୋରାମାନଙ୍କ ଠାରୁ ଆମେ ତାଙ୍କର ଭାଷା ଓ ଆଦାନ ପ୍ରଦାନ ଶିଖିଲେ । ମାତ୍ର ଆର୍ଥିକ ପ୍ରଗତି ପାଇଁ ସେମାନଙ୍କ କୌଶଳ, କାର୍ଯ୍ୟ ପଦ୍ଧତି ଓ ସାମର୍ଥ୍ୟ ଆମେ ଜାଣିପାରିଲେ ନାହିଁ ।

ବିଦେଶୀ ସରକାରଙ୍କ ଅନେକ କାର୍ଯ୍ୟ ଆମକୁ ମୋହିତ କରିଦେଲା । ଆମ ସେବା ପାଇଁ ସେମାନେ ସତେ ଯେପରି ଲାଗି ପଡ଼ିଥିଲେ । କିନ୍ତୁ ସେସବୁ ଆମ ପାଇଁ ଅଫିମ ଭଳି ଥିଲା । ଆମକୁ ବଶ କରି ଭୁଲାଇ ସେମାନେ ଭବିଷ୍ୟତ କାରିଗରି କୌଶଳ କ୍ଷେତ୍ରରେ ଆମକୁ ପରୋକ୍ଷ ଭାବରେ କିଣି ନେବାର ଯୋଜନା କରିଥିଲେ । ଯାହାର ପରିଣାମ ଏବେ ବି ଆମେ ଭୋଗ କରୁଛୁ । ଆମ ଭଳି ବିକାଶଶୀଳ ଦେଶଗୁଡ଼ିକର ଚିତ୍କାର ବିଶ୍ୱ ଦରବାରରେ ବିଶେଷ ପ୍ରଭାବ ପକାଇ ପାରୁନାହିଁ ।

ତୃତୀୟ ବିଶ୍ୱର ଦେଶଗୁଡ଼ିକ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ସକାଶେ ଏକ ଆନ୍ତର୍ଜାତିକ ନିୟମ ଦାବି କଲେ । କିନ୍ତୁ ଅମେରିକାର ଇଚ୍ଛା ଓଲଟା । ଆମେରିକା ଚାହୁଁଛି ବହୁ ରାଷ୍ଟ୍ରୀୟ କମ୍ପାନୀଙ୍କୁ ସବୁପ୍ରକାର ସ୍ୱାଧୀନତା ମିଳୁ । ବିଦେଶୀ ଆଉ ଦେଶୀ କମ୍ପାନୀଙ୍କ ଉପରେ ଯେମିତି କୌଣସି ବାନ୍ଧ ବିଚାର ନ ରଖାଯାଉ । ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକର ସଂଘବଦ୍ଧ ଦାବିକୁ ତଥା ରପ୍ତାନୀ ଦ୍ରବ୍ୟ ଗୁଡ଼ିକର ମୂଲ୍ୟ ବୃଦ୍ଧିକୁ ସେମାନେ ବିରୋଧ କରୁଛନ୍ତି । କୃଷି, ଖଣିଜ ଦ୍ରବ୍ୟ ଇତ୍ୟାଦି ବାଣିଜ୍ୟରେ ଲିପ୍ତଥିବା ବହୁରାଷ୍ଟ୍ରୀୟ କମ୍ପାନୀମାନେ ସେମାନଙ୍କ ଇଚ୍ଛାନୁସାରେ ମାର୍କେଟକୁ ନିୟନ୍ତ୍ରଣ କରିବାରେ ଲାଗିଛନ୍ତି ।

ତୃତୀୟ ବିଶ୍ୱର ରାଷ୍ଟ୍ରମାନେ କାରିଗରୀ ଓ ଯାନ୍ତ୍ରିକ କୌଶଳକୁ ନିଜ ଅକ୍ତିଆର କୁ ଆଣି ନିଜସ୍ୱ କ୍ଷମତା ବଢ଼ାଇବା ପାଇଁ ଦାବି କଲେ । ଆମେରିକା ଇଚ୍ଛା କରୁଛି, ତାର ନିୟମକୁ ଆନ୍ତର୍ଜାତିକ କ୍ଷେତ୍ରରେ ଲାଗୁକରିବ ଯାହା ଫଳରେ କାରୀଗରି ଓ ଯାନ୍ତ୍ରିକ କୌଶଳର ମାଲିକ ବହୁ ରାଷ୍ଟ୍ରୀୟ କଂପାନୀମାନେ, ସବୁଠାରୁ ଅଧିକ ଉପକୃତ ହେବେ ଏବଂ ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ସବୁଦିନ ସେମାନଙ୍କ ଉପରେ ନିର୍ଭର କରି ରହିବେ । ଆମେରିକା ଏହି ଦେଶ ଗୁଡ଼ିକର ପ୍ରକୃତିଦତ୍ତ ସମ୍ପଦ ଉପରେ ସ୍ୱାଧିନ ଭାବରେ ପ୍ରବେଶ କରି ପୂର୍ଣ୍ଣ ଅଧିକାର ଆଣିବାକୁ ଚାହୁଁଛି । ସେମାନେ ତିଆରି କରିବା ନୂଆ ମଞ୍ଜି ଆଉ ନୂଆରକମର ଜୀବ ସମ୍ପଦ ଆଣି ଏ ଦେଶ ମାନଙ୍କର ନିଜସ୍ୱ ଜୀବ ସଂପଦ ଉପରେ ପୁରା ପୁରି ପ୍ରଭାବ ପକାଇବେ ଓ ଆମକୁ ନିର୍ଭର ଶୀଳ କରାଇ ରଖିବେ ।

ତୃତୀୟ ରାଷ୍ଟ୍ରର ଦେଶମାନେ ରିହାତି ହାରରେ କିଛି ସାହାଯ୍ୟ ଓ ଋଣ ପାଇବା କୁ ଚାହିଁଲେ । ମାତ୍ର ପ୍ରଥମେ ପୁରୁଣା ଋଣ ଫେରାଇବା ପାଇଁ ଆମେରିକା

ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କୁ ବାଧ୍ୟ କରୁଛି । ଗତ ଏକ ଦଶନ୍ଧି ହେଲା, ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କର ଋଣ ପରିଶୋଧ ପାଇଁ ବିପୁଳ ଅର୍ଥ ସମ୍ବଳ ବିଦେଶକୁ ବୁହା ହୋଇଗ୍ଲଲିଛି । ଉନ୍ନତ ଦେଶମାନେ ରିହାତି ଦରରେ ଋଣ ଦେବା ପାଇଁ ମନା କରିଦେଲେ । ସେମାନେ ବିକାଶମୂଳକ ପ୍ରକଳ୍ପ ପାଇଁ କେବଳ ବ୍ୟବସାୟିକ ଭିତ୍ତିରେ ଋଣ ଦେବା ପାଇଁ ରାଜି ହେଉଛନ୍ତି ।

ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ନିଜସ୍ୱ ଶିଳ୍ପକୁ ସୁରକ୍ଷା କରିବା ପାଇଁ ଦାବି କଲେ । କିନ୍ତୁ ମନେ ହେଉଛି ଆନ୍ତର୍ଜାତିକ ପ୍ରତିଦ୍ୱନ୍ଦିତା ମୂଳକ ବଜାରରେ ଯିଏ ତିଷ୍ଠି ପାରୁଛି ସେ ହିଁ ରହିବ ।

ଆନ୍ତର୍ଜାତିକ ଅନୁଷ୍ଠାନଗୁଡ଼ିକୁ ଗଣତାନ୍ତ୍ରିକ ପଦ୍ଧତିରେ ଚଳାଇବା ପାଇଁ ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ଦାବି କଲେ । ମାତ୍ର ଯାହା ଦେଖାଯାଉଛି ଜାତିସଂଘର କାର୍ଯ୍ୟସୂଚୀକୁ ଅବହେଳା କରାଯାଇ "ଗୋଟିଏ ଦେଶରେ ଗୋଟିଏ ଭୋଟ" ନୀତି ଅନୁସରଣ କରାଯାଉଛି ।

ଗତ ଦୁଇ ଦଶନ୍ଧି ହେଲା ଉନ୍ନତ ଦେଶମାନେ ଅର୍ଥନୈତିକ ସମସ୍ୟାରେ ବିବ୍ରତ ହୋଇ ରିହଛନ୍ତି । ୧୯୫୦ ରୁ ୧୯୭୦ ଭିତରେ ସେମାନଙ୍କ ଆର୍ଥିକ ସମ୍ବଳ ଯେପରି ଥିଲା ବର୍ତ୍ତମାନ ମାତ୍ର ତାହାର ଅଧା ହୋଇ ପାରୁଛି । ଏହା ଫଳରେ ବେକାରୀ ବଢ଼ି ଗ୍ଲଲିଛି । ବର୍ତ୍ତମାନ ୩୫ କୋଟି ଲୋକ ଏହି ଉନ୍ନତ ଦେଶମାନଙ୍କରେ ବେକାର ଅଛନ୍ତି । ବୋଝ ଉପରେ ନଳିତା ବିଡ଼ ପରି ବେକାରୀ ସାଙ୍ଗକୁ ଜିନିଷ ପତ୍ରର ଦାମ୍ ବଢ଼ିଗ୍ଲଲିଛି । ବ୍ୟାଙ୍କ ଆଉ ଅର୍ଥନୀତି କ୍ଷେତ୍ରରେ ବି ଅବସ୍ଥା ବଡ଼ ଖରାପ ।

ପାଶ୍ଚାତ୍ୟ ଦେଶଗୁଡ଼ିକ ଦ୍ୱାରା ଆନ୍ତର୍ଜାତୀକ ଅର୍ଥନୀତିକୁ ନିଜ ଅକ୍ତିଆରକୁ ଆଣିବା ପାଇଁ ହୋଇଥିବା ଯୋଜନାର ଏହା ହେଉଛି ପୃଷ୍ଠ ଭୂମି । ସେମାନେ ନିଜ ନିୟନ୍ତ୍ରଣରେ ଏକ ଆନ୍ତର୍ଜାତିକ ଅର୍ଥନୀତି ଗ୍ଲହୁଛନ୍ତି, ଯେଉଁଥିରେ କୌଣସି ଦେଶ ବାଧା ଦେଇ ପାରିବ ନାହିଁ । ଏହା ଦ୍ୱାରା ବହୁଦେଶୀୟ କଂପାନୀମାନେ ମୁକ୍ତ ଭାବରେ ସେମାନଙ୍କର କାରବାର କରିପାରିବେ । ନିଜ ଇଚ୍ଛା ମୁତାବକ ଆନ୍ତର୍ଜାତିକ ବଜାରରୁ ଲାଭ ଉଠାଇ ପାରିବେ । କେବଳ ଜିନିଷପତ୍ର କାରବାର କ୍ଷେତ୍ରରେ ନୁହେଁ । ଗ୍ଲକିରୀ କ୍ଷେତ୍ରରେ ମଧ୍ୟ ସେମାନଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ରହିବ । ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ବର୍ତ୍ତମାନ ବ୍ୟାଙ୍କ ଓ ଜୀବନବୀମା କ୍ଷେତ୍ରରେ ଆମେରିକା କମ୍ପାନୀମାନଙ୍କର ହାତ ରହିଛି । ନୂଆ ନୂଆ ବୈଷୟିକ କାରୀଗରି କୌଶଳ, ଜେନେଟିକ, ଇଞ୍ଜିନିୟରିଂ, ଆଧୁନିକ ଇଲେକ୍ଟ୍ରୋନିକ ଶିଳ୍ପ ଓ କୃଷି କ୍ଷେତ୍ରରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିବାକୁ ଆଗେଇଲେଣି । ଏକ ନୂଆ ଧରଣର ଶିଳ୍ପ ବିପ୍ଳବର ସୂତ୍ରପାତ ହେଲାଣି । ଜ୍ଞାନ ହିଁ

ସଂପଦ ଏହା ଯଥାଶୀଘ୍ର ବାସ୍ତବରେ ପ୍ରମାଣିତ ହେବାକୁ ଯାଉଛି । ସବୁ ଦେଶର ସ୍ଥାନରେ ଘରୋଇକରଣ କରିବା ଅଧିକାର ପାଇଁ ବର୍ତ୍ତମାନ ପ୍ରକୃଷ୍ଟ ସମୟ ଆସିଲାଣି । ଏହାକୁ ନିଧାର୍ଯ୍ୟ କରିବା ପାଇଁ ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକର ମୁଖ୍ୟ ନିୟମଗୁଡ଼ିକର ପରିବର୍ତ୍ତନ କରାଯିବ ।

## ପଛଘୁଞ୍ଚାଦେବାର କାରଣ

ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ନିଜସ୍ୱ କାର୍ଯ୍ୟ କୌଶଳ ପାଇଁ ଅନେକ ଯୁକ୍ତି ଦେଖାଉଛନ୍ତି । କିନ୍ତୁ ଆମର ଜାତୀୟନେତା ସାମ୍ରଜ୍ୟବାଦୀଙ୍କ ପଛରେ କାହିଁକି ପଡ଼ିଯାଇଛନ୍ତି ତାହା ଜାଣାପଡୁନାହିଁ । ଉପନିବେଶବାଦୀ ଶକ୍ତିମାନଙ୍କ ରାଜୁତି ସମୟର ଦୁଃଖକୁ ଏମାନେ ଏତେ ଶିଘ୍ର ଭୁଲିଗଲେ କିପରି ? ସେମାନଙ୍କୁ ଏତେ ଦୁର୍ବଳ କଲା କିଏ ? ସେମାନଙ୍କର ଏ ଅସହାୟତାକୁ ଆମକୁ ଭଲ ଭାବରେ ବୁଝିବା ଆବଶ୍ୟକ । ଏଥିପାଇଁ ସ୍ୱାଧିନତା ପରବର୍ତ୍ତୀ କାଳର ଅର୍ଥନୈତିକ ବିକାଶକୁ ଆମକୁ ପରୀକ୍ଷା ନିରୀକ୍ଷା କରିବାକୁ ପଡ଼ିବ ।

ଏଥିରେ ଦୁଇଟି ମୁଖ୍ୟ ଅସୁବିଧା ଦେଖାଯାଇଛି ।

(୧) ଗୋଟିଏ ପକ୍ଷରେ ଆମ ଜାତୀୟ ସରକାର ନିଜର ରାଜସ୍ୱ ଅପେକ୍ଷା ଅଧିକ ଖର୍ଚ୍ଚ କରୁଛନ୍ତି ।

(୨) ଅନ୍ୟ ପକ୍ଷରେ ଆମ ଦେଶରେ ଯାହା ଉପାଦିତ ହେଉଛି ତା ତୁଳନାରେ ଆମର ଖର୍ଚ୍ଚର ମାତ୍ରା ଅଧିକ ହେଉଛି ।

ସମୟ ଆଗେଇବା ସଂଗେ ସଂଗେ ସମ୍ବଳ ଅନୁସାରେ ଖର୍ଚ୍ଚର ପରିମାଣ ମଧ୍ୟ ବଢ଼ି ଚ୍ଛଲିଛି । ବର୍ତ୍ତମାନ ଏହି ଅବସ୍ଥା ଏତେ ସାଂଘାତିକ ଯେ ଆନ୍ତର୍ଜାତିକ ସ୍ତରରେ ସେମାନେ ଅନୁଭବ କରିବାକୁ ଆରମ୍ଭ କଲେଣି । ଅନ୍ୟ ଭାଷାରେ କହିବାକୁ ଗଲେ ଆମ ଦେଶରେ ବିକାଶ ପାଇଁ ଯେତେ ପ୍ରକାର ନିୟମକୁ ତିଆରି କରାଗଲେ ମଧ୍ୟ, ସ୍ୱାଧିନତାକୁ ଅର୍ଥନୈତିକ ଦୃଷ୍ଟିରୁ ସମୃଦ୍ଧ କରିବା କ୍ଷେତ୍ରରେ ବିଫଳ ହେଉଛନ୍ତି । ୧୯୪୭ ମସିହା ପରେଆମ ଦେଶରେ କିଛି ଯେ ପରିବର୍ତ୍ତନ ହୋଇନାହିଁ ତାହା ନୁହେଁ । କୃଷି କ୍ଷେତ୍ରରେ ଅନେକ ଉନ୍ନତି ହୋଇଛି, ଯଦିଓ ଏହା କେତୋଟି ଅଞ୍ଚଳରେ ମାତ୍ର ସୀମିତ ଅଛି । ଦେଶରେ ନୂଆ ନୂଆ ଶିଳ୍ପ ଗଢ଼ି ଉଠିଛି । ତୃତୀୟ ବିଶ୍ୱ ରାଷ୍ଟ୍ରମାନଙ୍କଭିତରୁ ଆମର ସବୁଠାରୁ ଅଧିକ କୁଶଳୀ ମଣିଷ ଅଛନ୍ତି । ବ୍ରିଟିଶ୍ ରାଜତ୍ୱ ସମୟରେ ଯେଭଳି ଅର୍ଥନୈତିକ ଅବସ୍ଥା ଥିଲା ତାଠାରୁ ବର୍ତ୍ତମାନ ତିନିଗୁଣ

ଅଧିକ ହୋଇଛି । କିନ୍ତୁ ସବୁଠାରୁ ବଡ଼ ଅସୁବିଧା ହେଉଛି ଏସବୁ ବିକାଶ ଅଳ୍ପ କେତେକଙ୍କ ପାଖରେ ସୀମିତ ହୋଇଯାଇଛି । ବହୁ ଲୋକଙ୍କ ପାଖରେ ଅସ୍ୱାସ୍ଥ୍ୟ, ବାସ ଗୃହର ଅଭାବ ଦାରିଦ୍ର୍ୟ ଆଦି ଲାଗିରହିଛି । ଆମର ବିକାଶ ମୂଳକ ପଦକ୍ଷେପଗୁଡ଼ିକରୁ ଆମକୁ ଏତିକି ଅଭିଜ୍ଞତା ମିଳିଛି ଯେ, ଅଧିକାଂଶ ଲୋକ ଦାରିଦ୍ର୍ୟର କଷାଘାତ ସହୁଛନ୍ତି ଓ ଅଳ୍ପ କିଛି ଲୋକ ଧନ ସଂପଦକୁ ଉପଭୋଗ କରୁଛନ୍ତି ।

ଆମ ସରାକାର ସବୁ ଜିନିଷ ପାଇଁ ଏହି ଅଳ୍ପ ସଂଖ୍ୟକ ଧନୀକ ଗୋଷ୍ଠୀଙ୍କ ଉପରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେର ନିର୍ଭର କରୁଛନ୍ତି ।

## ଆୟ ତୁଳନାରେ ଖର୍ଚ୍ଚ ବେଶୀ

ଆମ ଜାତୀୟ ଆୟର ଶତକଡ଼ା ୩୦ ଭାଗ ସରକାର ଖର୍ଚ୍ଚ କରୁଛନ୍ତି । ଏହି ଖର୍ଚ୍ଚ ଦେଶର ବିକାଶ ଦିଗରେ ଦରକାର ଏକଥା ସମସ୍ତେ ସ୍ୱୀକାର କରିବେ । ମାତ୍ର ଖର୍ଚ୍ଚ ବଢ଼ାଇବା ଅନୁସାରେ ଆୟ ବଢ଼ିପାରେ ନାହିଁ । ୧୯୬୦-୬୧ ମସିହା ବେଳକୁ ସରକାରୀ ଅର୍ଥର ୮୮ ଭାଗ ସମ୍ବଳ ବିଭିନ୍ନ ଉପାୟରେ ମିଳିଯାଉଥିଲା କିନ୍ତୁ ବର୍ତ୍ତମାନ ମାତ୍ର ୨୯ ଭାଗ ମିଳୁଛି । ଯେତେବେଳେ ଦେଶର ଖର୍ଚ୍ଚର ପରିମାଣ ଅଧିକ ହୋଇଛି ସେତେବେଳ ରାଜସ୍ୱ ଟିକସ ଆଦାୟ ହ୍ରାସ ହେବାର କାରଣ କଣ ? ଏହାର କାରଣ ଅତି ଜଣାଶୁଣା । ସରକାର ବିକାଶମୁଳକ କାର୍ଯ୍ୟ ପାଇଁ ଧନୀମାନଙ୍କ ଉପରେ ନିର୍ଭର କଲେ । ତେଣୁ ଧନୀମାନଙ୍କ ଉପରେଅଧିକ ଟିକସ୍ ଲଗାଇବା ପାଇଁ ସରକାର ସକ୍ଷମ ହେଉନାହାନ୍ତି । ସ୍ୱାଧୀନ ଭାରତରେ ଧନୀଲୋକମାନେ ଅଧିକରୁ ଅଧିକ ଧନୀ ହେଉଛନ୍ତି । ଜାତୀୟ ଆୟ ୧୯୬୦-୬୧ରେ ଶତକଡ଼ା୧୦.୪ଥିଲା । ଏହା ୧୯୮୯-୯୦ ମସିହାରେ ୨୨କୁ ବୃଦ୍ଧିପାଇଛି, ମାତ୍ର ଯେଉଁମାନେ ଟିକସ୍ ଦେଇପାରିବେ, ସେମାନେ ଟିକସ୍ ଦେଉ ନାହାନ୍ତି । କେବଳ ଆୟ ଓ ସଂପତ୍ତି ଉପରେ ଧନୀମାନେ ସିଧା ସଳଖ ଟିକସ ଦିଅନ୍ତି । ତେଣୁ ଜାତୀୟ ସଂଚୟ ଶତକଡ଼ା ୧୨.୪ ରୁ ଶତକଡ଼ା ୧.୨ କୁ କମିଯାଇଛି । ସତକଥା ହେଉଛି ଯେ ଅନ୍ୟ ବିକାଶଶୀଳ ଦେଶଗୁଡ଼ିକର ଧନୀମାନ ଯେତିକି ଟିକସ ଦିଅନ୍ତି ଆମଦେଶରେ ସେମାନେ ସେହିଅନୁସାରେ ବହୁତ କମଟିକସ୍ ଦିଅନ୍ତି । ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକରେ ଧନୀମାନଙ୍କ ଉପରେ ରାଜସ୍ୱ ଟିକସ ହାରାହାରି ଶତକଡ଼ା ୩୫ ହେଲାବେଳେ ଭାରତରେ ଏହା ମାତ୍ର ଶତକଡ଼ା ୧୮ ।

ପ୍ରଶ୍ନ ଉଠୁଛି ଯେତେବେଳେ ଖର୍ଚ୍ଚ ବଢ଼ିଚାଲିଛି ଓ ରାଜସ୍ୱ ଆଦାୟ ସେହି ଅନୁସାରେ ବଢ଼ୁନି ସେତେବେଳେ ସରକାରକିପରି ସମ୍ବଳ ଯୋଗାଡ଼ କରୁଛନ୍ତି ।

ସରକାର ସବୁଠାରୁ ସହଜ ବାଟଟି ବାଛି ନେଇଛନ୍ତି । ସରକାର ଅଧିକ ନୋଟ ଛପାଇବା ଦ୍ୱାରା ମୁଦ୍ରା ସ୍ଫୀତି ହୁଏ । ତେଣୁ ଧାରକରିବା ଉପରେ ଅଧିକ ନିର୍ଭର କରିବାକୁ ପଡୁଛି । ଲାଭଦାୟକ ବିକାଶ ମୂଳକ ଯୋଜନାରେ ଋଣ ଆଣି ଖର୍ଚ୍ଚ କରାଗଲା । କିନ୍ତୁ ଏଇ ଋଣ ଆଣିବା ପୂରା ଓଲଟା ପ୍ରକାରର ହେଉଛି । ସାଧାରଣ ନିତି ଦିନିଆ ଚଳଣୀ ପାଇଁ ବି ଆମେ ଋଣ ଆଣୁଛୁ । ଯେତେ ଅଧିକରୁ ଅଧିକ ଋଣ ଆଣୁଛୁ ସେହି ଅନୁପାତରେ ସୁଧ ବଢ଼ି ଚାଲିଛି । ଆମର ଅଧିକାଂଶ ସମ୍ବଳ କେବଳ ଋଣ ପରିଶୋଧ କରିବାରେ ଯାଉଛି, ତେଣୁ ଆମର ଅବସ୍ଥା ବଡ଼ ଅସମ୍ଭାଳ ହେଲାଣି । ବିର୍ତ୍ତମାନ ଏହାର ପ୍ରତିକାର ମୂଳକ ବ୍ୟବସ୍ଥା ଜରୁରୀ ଅଟେ । ଗତ ତିନି ତିନିଟା ବଜେଟ୍ ରେ ଅର୍ଥମନ୍ତ୍ରୀ ଏଥିପାଇଁ କଣ ସବୁ କରିଛନ୍ତି ତାହା ଜାଣିବା ଦରକାର । ଘୋଷଣା କରାଯାଇଛି ଯେ ଋଣ ଆଣିବା ସରକାରଙ୍କ ପାଇଁ ଉଚିତ୍ ବାଟ ନୁହେଁ । ଯଥାଶୀଘ୍ର ଋଣ ଆଣିବା ପୁରା ବନ୍ଦ କରାଇବାକୁ ପଡ଼ିବ । ଏସବୁ କେମିତି କରାଯିବ ? ଗୋଟିଏ ଉପାୟ ହେଲା, ଧନୀକମାନଙ୍କ ଠାରୁ ଅଧିକଟିକସ ଆଦାୟ କରିବା ଓ ଟିକସ୍ ଛାଡ଼ନକରିବା । ମାତ୍ର ଏସବୁ କରିବାକୁ ସମୟ ଆମ ପାଖରେ ନାହିଁ । ଏମିତି କଲେ ଧନୀମାନଙ୍କୁ ଅନେକ ବାଧିବ, ସେମାନେ ସହ ଯୋଗ ନକରି ସେମାନଙ୍କ ଲାଭଖୋର ମନୋଭାବକୁ ପ୍ରୟୋଗ କରିବେ । ଫଳରେ ଭବିଷ୍ୟତ ଅର୍ଥନୀତି ଅସୁବିଧାରେ ପଡ଼ିଯିବ ।

ତେଣୁ ଆଉ ଗୋଟିଏ ଉପାୟ ସରକାର ବାଛି ନେଇଛନ୍ତି । ତାହା ହେଲା ସରକାରୀ ଆସବାବପତ୍ର ବିକ୍ରିକରିବା । ସାଧାରଣ ଜିନିଷ ପତ୍ରର ଦରଦାମ ବଢ଼ାଇବା ଇତ୍ୟାଦି । ଖର୍ଚ୍ଚ କମାଇବାରବି ବ୍ୟବସ୍ଥା କରାଯାଇଛି । ଏହି ଖର୍ଚ୍ଚ କାଟ ବ୍ୟବସ୍ଥା ବିକାଶ ମୂଳକ ଯୋଜନା ଉପରେ ଲାଗୁକରାଯାଇଛି କୃଷିରେ ଗରୀବଙ୍କ ଉପରେ ଥିବା ରିହାତି ଉପରେ କଟକଣା ଜାରି କରାଯାଇଛି । ଏହା ଦ୍ୱାରା ସରକାରୀ ଖର୍ଚ୍ଚକୁ ସଂକୁଚିତ କରାଗଲା । ଅନ୍ୟ ଅର୍ଥରେ ବିକାଶ ମୂଳକ କାର୍ଯ୍ୟକ୍ରମରୁ ସରକାର ଓହରି ଆସୁଛନ୍ତି । ଧନିକ ଗୋଷ୍ଠିଙ୍କ ଠାରୁ ଟିକସ୍ ଆଦାୟ କରି ନପାରି ସରକାର ବିକାଶ ମୂଳକ କାମ ଓ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ପ୍ରକଳ୍ପଗୁଡ଼ିକ କାର୍ଯ୍ୟକାରୀ କରିବା ବନ୍ଦ୍ କରୁଛନ୍ତି ।

## ଭାରତ ବର୍ତ୍ତମାନ ଋଣ ଯନ୍ତାରେ

ଦେଶ ସ୍ୱାଧୀନ ହେବାପରେ ପରେ ଆତ୍ମନିର୍ଭରଶୀଳ ହେବାପାଇଁ ଅନେକ ଗୁରୁତ୍ୱ ଦିଆଯାଇଥିଲା । ସେଥିପାଇଁ ବିଦେଶରୁ ଜିନିଷପତ୍ର ଆମଦାନୀ କରିବା ଉପରେ

ଅନେକେ କଟକଣା ରଖାଯାଇଥିଲା । ପରେ ପରେ ଆମ ଯୋଜନାକାରୀମାନେ ଭାବିଲେ ବିଦେଶୀ ଜିନିଷ ନଅସିଲେ ଦେଶର ପ୍ରଗତି କଷ୍ଟକର ।ଏଥିପାଇଁ ବିଦେଶୀ ଜିନିଷ ଉପରେ ଥିବା କଟକଣାକୁ କୋହଳ କରାଗଲା । ଆସ୍ତେ ଆସ୍ତେ ବିଦେଶୀ ଜିନିଷ ଆମଦାନୀ ବଢ଼ିବାକୁ ଲାଗିଲା । ରପ୍ତାନୀ ତୁଳନାରେ ବର୍ତ୍ତମାନ ଆମଦାନୀ ଯଥେଷ୍ଟ ବେଶୀ । ଗତ ୮୦ ମସିହା ପରେ ଏହା ସବୁଠାରୁ ଅଧିକ ହୋଇଛି ।

ଆମଦାନୀ ବଢ଼ିବା ଦ୍ୱାରା ପ୍ରଗତି ଅପେକ୍ଷା ଆମର କେବଳ ଦୁର୍ଗତି ହୋଇଛି । ବର୍ତ୍ତମାନ ଭାରତରେ ଶତକଡ଼ା ୪୦ଭାଗ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଅଛନ୍ତି । ଭଲକରି ଗଣ୍ଡେ ଖାଇବାପାଇଁ ହାତରେ ପଇସା ନାହିଁ । ଲୁଗାପଟା, ସାଇକେଲ, ରେଡ଼ିଓ ଓ ଅନ୍ୟାନ୍ୟ ସାମଗ୍ରୀତ ସେମାନଙ୍କ ପାଇଁ ଦୂରର କଥା । ବାହାରୁ ଦେଖିଲେ ଦେଶରେ ଅନେକ ବିକାଶମୂଳକ କାମ ହୋଇଛି । ମାତ୍ର ଏ ବିକାଶ କୋଟି କୋଟି ସାଧାରଣ ଜନତାଙ୍କୁ ଛୁଇଁପାରିନି । ଧନୀ ଓ ଗ୍ୱାଲାକ୍ ଲୋକେ ଦେଶୀୟ ଜିନିଷକୁ ପସନ୍ଦ କଲେ ନାହିଁ । ସେମାନେ ବିଦେଶୀ ଜିନିଷ ଉପଭୋଗ କରିବାପାଇଁ ମନବଳାଇଲେ । ତାଙ୍କ ଖିଆଲ ଓ ପସନ୍ଦ ଅନୁସାରେ ନିୟମ ବଦଳିଲା । ଆମ ଦେଶର ନୀତିକୁ କୋହଳ କରାଗଲା । ଏପରି ପରିସ୍ଥିତି ସୃଷ୍ଟି ହେବାକୁ ବସିଲା ଯଦ୍ୱାରା ଦେଶୀୟ ମାର୍କେଟ ଅପେକ୍ଷା ବିଦେଶୀ ମାର୍କେଟ ଉପରେ ଦେଶ ଅଧିକ ନିର୍ଭର କଲା ।

ବିଦେଶୀ କଂପାନୀଙ୍କ ସହ ସହଯୋଗ ଭିତ୍ତିକ, ଯୁଗ୍ମ ପରିଗ୍ୱଳନା ଭିତିକ ଯୋଜନାଗୁଡ଼ିକୁ ଉତ୍ସାହିତ କରାଗଲା । ଫଳରେ ବହୁରାଷ୍ଟ୍ରୀୟ କଂପାନୀମାନଙ୍କ ସଂଖ୍ୟା ଦେଶରେ ବଢ଼ି ଗ୍ୱଲିଲା । ବିଦେଶୀ କଳକବଜା ଯନ୍ତ୍ରପାତି ଆଦିର ଆମଦାନୀ ବୃଦ୍ଧିପାଇଲା ।

## ବିଦେଶୀ ଜିନିଷର ଆମଦାନୀ

ଉଦାହରଣ : ୧) ପେଟ୍ରୋଲ ଓ ପେଟ୍ରୋଲ ଜାତ ଦ୍ରବ୍ୟ ।

ଆମ ଗ୍ୱହିଦାଅନୁସାରେ ଆମଦେଶରେ ପେଟ୍ରୋଲ ଓ ପେଟ୍ରୋଲ ଜାତ ଜିନିଷ ନାହିଁ । ଏଥିପାଇଁ ବହୁପରିମାଣରେ ଏସବୁ ଆମେ ବିଦେଶରୁ ଆମଦାନୀ କରିଥାଉ । ବର୍ତ୍ତମାନ ସ୍ଲୋଗାନ ଦିଆଯାଉଛି, "ପେଟ୍ରୋଲ ବଞ୍ଚାଅ" କିନ୍ତୁ ଅଳ୍ପ ପେଟ୍ରୋଲ ଖର୍ଚ୍ଚକରି କିପରି ଚଳିପାରିବା ଏଥିପାଇଁ ଆମେ ଆଦୌ ଧ୍ୟାନ ଦେଉ ନାହାନ୍ତି । ଟ୍ରେନ ଓ ବୁଡ଼ା ଜାହାଜରେ ପେଟ୍ରୋଲ ଖର୍ଚ୍ଚ କମ୍ । ମାତ୍ର ଟ୍ରେନ ଓ ବୁଡ଼ାଜାହାଜ ଅପେକ୍ଷା ଆମ ଦେଶରେ ଯାତାୟତପାଇଁ ବସ୍ ଟ୍ରକ , ମୋଟର ଆଦି ସଡ଼କରେ ଗ୍ୱଲୁଥିବା ଗାଡ଼ିଗୁଡ଼ିକ ଅଧିକ ପରିମାଣରେ ବ୍ୟବହାର କରାଯାଉଛି ।

ଫଳରେ ପେଟ୍ରୋଲ ଖର୍ଚ୍ଚ ବଢ଼ିବା ସ୍ୱାଭାବିକ । ଆମ ଦେଶରେ ପ୍ରତିବର୍ଷ ହାରାହାରି ଶତକଡ଼ା ୯ ଭାଗ ଅଧିକ ପେଟ୍ରୋଲ ଖର୍ଚ୍ଚ ହେଉଛି ।

ଉଦାହରଣ (୨) : ଯୁଦ୍ଧସାମଗ୍ରୀ

ଦେଶରକ୍ଷା ନାଁରେ ଆମେ ଯୁଦ୍ଧସାମଗ୍ରୀ କିଣୁଛୁ । ଯୁଦ୍ଧସାମଗ୍ରୀ କିଣିବାରେ ଅନେକ ଦୁର୍ନୀତି ରହୁଛି ବୋଲି ବୋଫର୍ସ ଘଟଣାପରେ ଅନେକ କଥା ସ୍ପଷ୍ଟ ହୋଇଗଲା ।

୧୯୮୫ ରୁ ୧୯୮୯ ଭିତରେ ଭାରତ ଆନ୍ତର୍ଜାତିକ ମାର୍କେଟରୁ ୧୭୩୯ କୋଟି ଡ଼ଲାରର ଯୁଦ୍ଧପାଇଁ ଅସ୍ତ୍ର ଶସ୍ତ୍ର କିଣିଛି । ଆମେ ଆଉ ଯେତେ ଜିନିଷ ଆମଦାନୀ କରୁଛୁ ସେସବୁ ତୁଳନାରେ ଏହାର ମୂଲ୍ୟ ଅଧିକ । ଏତେ ମୂଲ୍ୟର ପେଟ୍ରୋଲ ଓ ପେଟ୍ରୋଲ ଜାତ ଦ୍ରବ୍ୟ ଆମଦାନୀ କରାଯାଉନାହିଁ । ପୃଥିବୀରେ ସବୁ ଦେଶ ଅପେକ୍ଷା ଭାରତର ଯୁଦ୍ଧ ଅସ୍ତ୍ର ଶସ୍ତ୍ର ଆମଦାନୀ ଅଧିକ ଅଟେ । ଯୁଦ୍ଧ ପାଇଁ ଆମେ ଏତେ ଖର୍ଚ୍ଚ କରିପାରୁଛୁ । ମାତ୍ର ଲୋକମାନଙ୍କର ସର୍ବନିମ୍ନ ଆବଶ୍ୟକତା ଗୁଡ଼ିକୁ ପୂରଣ କରିବା ପାଇଁ ଆମ ପାଖରେ ସମ୍ବଳ ନାହିଁ ବୋଲି କହୁଛୁ , ଏହା ପ୍ରକୃତରେ ଆଦୌ ଯୁକ୍ତି ଯୁକ୍ତ ମନେ ହେଉନାହିଁ ।

## ଆମଦାନୀର ପ୍ରକୃତ ଅର୍ଥ କଅଣ ?

ବିଦେଶୀ ଜିନିଷର ଆମଦାନୀ ବଢ଼ି ଚାଲିଛି । ୧୯୮୦-୮୧ରେ ଆମଦାନୀର ମୂଲ୍ୟଥିଲା ୫୦୦ କୋଟି ଟଙ୍କା ୧୯୯୦ ବେଳକୁ ଏହା ୧୪୦୦ କୋଟିଟଙ୍କା ହେଲା । ଆମର ରପ୍ତାନୀ ଏହା ତୁଳନାରେ ବହୁତ କମ୍ । ତେବେ ଆମେ ଆମଦାନୀ କରିବାପାଇଁ ସକ୍ଷମ ହେଲୁ କିପରି ? ଆମ ଆମଦାନୀ ପ୍ରକୃତରେ କହିବାକୁ ଗଲେ ଏକ ପ୍ରକାର ଧାର ବା ଋଣ ।

ବର୍ଷକୁ ବର୍ଷ ଋଣ ବଢ଼ିଚାଲିଛି । ବିଦେଶୀ ଋଣରେ ଆମେ ପୋତିହୋଇ ଗଲୁଣି । ସ୍ୱାଧୀନତାର ପ୍ରଥମ ୩୦ ବର୍ଷ ଭିତରେ ଆମର ସମୁଦାୟ ଋଣର ମୂଲ୍ୟ ଥିଲା ୨୦୦୦ କୋଟି ଡ଼ଲାର ! ଗତ ଦଶ ବର୍ଷଭିତରେ ବିଦେଶୀ ଋଣର ପରିମାଣ-୭୨୦୦ କୋଟି ଡ଼ଲାର ବା ପ୍ରାୟ ଦୁଇଲକ୍ଷ କୋଟି ଟଙ୍କା । ଅନୁନ୍ନତ ଦେଶମାନଙ୍କଭିତରେ ବିଦେଶୀ ଋଣ ଭାର ଦୃଷ୍ଟିରୁ ବ୍ରାଜିଲ ଓ ମେକ୍ସିକୋ ପଛକୁ ଭାରତ ହେଉଛି ତୃତୀୟ ଦେଶ । ହିସାବ କରି ଦେଖାଯାଇଛି ଭାରତର ଘର ପିଛା ବିଦେଶୀ ଋଣର ପରିମାଣ ହେଉଛି ୧୦, ୦୦୦ ଟଙ୍କା ।

## ଋଣ ଆଣିବାପାଇଁ ବାଧ୍ୟ ହେଉଛୁ

ଋଣ ବଢ଼ିବାସାଙ୍ଗକୁ, ସେହିଅନୁପାତରେ ସୁଧ ଦେବାକୁ ପଡୁଛି । ୧୯୮୯-୯୦ ରେ ଆମକୁ ସୁଧବାବଦ କେବଳ ୩୫୦୦୦ କୋଟି ଟଙ୍କା ଦେବାକୁ ପଡ଼ିଲା । ତେବେ ଋଣର ମୂଳ ଓ ସୁଧ ପରିଶୋଧ କରିବାପାଇଁ ଆମେ ଅର୍ଥ ପାଉଛୁ କେଉଁଠୁ । ନୂଆ କରି ଋଣ ଆଣିବା ଛଡ଼ା ଆମର ଅନ୍ୟ କୌଣସି ବାଟ ନାହିଁ । ବର୍ତ୍ତମାନ ଆଗେ ଋଣ ଜାଲ ଭିତରେ ଛନ୍ଦିହୋଇ ପଡ଼ିଛନ୍ତି ।

## ବିଶ୍ୱାସ ତୁଟି ଯାଉଛି ।

ଆମେ ଋଣ ନିର୍ଦ୍ଦିଷ୍ଟ ସମୟରେ ଶୁଝିଦେବୁ ବୋଲି ପ୍ରତିଶ୍ରୁତି ଦେଉଛୁ, ମାତ୍ର ଆମ କଥା ଆମେ ରକ୍ଷା କରିପାରୁନୁ । ଉଦାହରଣ ସ୍ୱରୂପ ୧୯୯୦-୯୧ରେ ବିଦେଶୀ ବାଣିଜ୍ୟ ଚଳାଇବାପାଇଁ ଓ ପୁରୁଣା ଋଣ ଶୁଝିବାପାଇଁ ୨୦ରୁ ୨୫ ହଜାର କୋଟି ଟଙ୍କା ଋଣ ଅଣାଗଲା । ଆମ ସରକାର ଦେଶଭିତରୁ ସମ୍ବଳ ଯୋଗାଡ଼ କରି ଋଣ ଶୁଝିଦେବେ ବୋ ଲି କହିଥିଲେ । ଏହି ସମୟରେ ଆଶା କରାଯାଇନଥିବା କିଛି ଘଟଣା ଘଟିଲା । ଋଣ ଶୁଝାଯାଇ ପାରିଲା ନାହିଁ । ଋଣ ଭାର ଅଧିକ ହେଲା । ଏକଥା କାହାକୁ ଅଛପା ରିହଲା ନାହିଁ । ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କ କଡ଼ା ନିର୍ଦ୍ଦେଶ ଦେଇ ଛିଠି ଲେଖିଲେ । ସେ ବର୍ଷ ଆମର ନିର୍ବାଚନ ବର୍ଷଥିଲା । ଏ ସମୟରେ ଏହି ଆନ୍ତର୍ଜାତିକ ଅନୁଷ୍ଠାନମାନଙ୍କର ସର୍ତ୍ତପୂରଣ କରିବା କଷ୍ଟକର ହୋଇପଡ଼ିଲା । ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଆଦି ଅନୁଷ୍ଠାନ ଗୁଡ଼ିକ ଅସନ୍ତୁଷ୍ଟ ହେଲେ ଫଳରେ ଭାରତକୁ ଋଣ ଦେବାକୁ ଅନେକ ରାଜି ହେଲେ ନାହିଁ । ଋଣ ଶୁଝିବାପାଇଁ ଭାରତ ଉପରେ ସମସ୍ତେ ଚାପ ପକାଇଲେ । ଋଣ ଜାଲ ଛିଡିଲା ନାହିଁ । ଭାରତ ବଡ଼ ବିପଦଭିତରେ ଦେଇ ଗତିକଲା ।

## ଦେଶ ବନ୍ଧା ପଡ଼ିବା ପାଇଁ ନୀୟମିତ ଚେଷ୍ଟା ଚାଲିଛି ।

ବିଦେଶୀ ଋଣ ନଆଣି ଆମେ ଆମଦେଶକୁ ଚଳାଇବାପାଇଁ ସକ୍ଷମ ହୋଇପାରୁନୁ । ନିଶାଗ୍ରସ୍ତ ରୋଗୀ ନିଶା ସେବନ ନକଲେ ଯେପରି ଚାଲିବାକୁ କଷ୍ଟକର ମନେକରେ, ବର୍ତ୍ତମାନ ଆମ ଅବସ୍ଥା ସେହିପରି । କିନ୍ତୁ ଆମକୁ ମନେରଖିବାକୁ ହେବ ଯେ - ଏ ଦେଶର ଦିନେ ସ୍ୱଦେଶୀ ଆନ୍ଦୋଳନ ଚାଲିଥିଲା ଏବଂ ଆତ୍ମନିର୍ଭରଶୀଳ ହେବାରଆଦର୍ଶ କଥା କୁହାଯାଇ ଥିଲା ।

ବିଦେଶୀ ଜିନିଷ ଆମଦାନୀ ପାଇଁ ଆମର ଯେଉଁ କଟକଣା ଥିଲା, ତାକୁ ଆମେ କୋହଳ କରିଦେଲେ । ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କ ଜରିଆରେ ଆମେ ବିଦେଶୀ ଋଣ ଆଣୁଛନ୍ତି । ଏକଥା ନିଶ୍ଚିତ ଯେ ଏ ଦୁଇଟି ଆନ୍ତର୍ଜାତିକ ଅନୁଷ୍ଠାନ ଯୁକ୍ତରାଷ୍ଟ୍ର ଆମେରିକା ଦ୍ୱାରା ନିୟନ୍ତ୍ରିତ । ଏହି ଅନୁଷ୍ଠାନମାନେ ଆନ୍ତର୍ଜାତିକ ଅର୍ଥନୀତିକୁ ନିଜ ଖିଆଲ ଅନୁସାରେ ପରିଚଳନା କରୁଛନ୍ତି ।

୧୯୮୧ ମସିହାରେ ଭାରତ ଆନ୍ତର୍ଜାତିକ ଅର୍ଥନୈତିକ ମୁଦ୍ରାପାଣ୍ଠିକୁ ନିଜ ଦ୍ୱାର ଉନ୍ମୁକ୍ତ କଲା । ଫଳରେ ଭାରତରେ ଆରମ୍ଭ ହୋଇଥିବା ନୂତନ ଅର୍ଥନୀତି ଉପରେ ଏହାର ପ୍ରଭାବ ବିସ୍ତାରିତ ହେଲା। ଆମ ଆବଶ୍ୟକତା ଗୁଡ଼ିକୁ ବିଦେଶରୁ ବାକିରେ ଆଣିବା ପାଇଁ ସେମାନେ ଆମକୁ ସାହାସ ଦେଲେ । ଆମକୁ ପ୍ରତ୍ୟେକ ସହଯୋଗ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ଆମେ ମରିଚିକା ପଛରେ ଧାଇଁଲୁ। ଏବେ ଦେଖିଲାବେଳକୁ ଆମେ ଏ ଜୁଆଖେଳରେ ହାରିଯାଇଛୁ ଓ ବିଦେଶୀ ଅର୍ଥନୀତି ହାତରେ ଆମେ ବନ୍ଧା ପଡ଼ିଛୁ ।

ବର୍ତ୍ତମାନ କୌଣସିମତେ ଋଣ ନଆଣିଲେ ଆମେ ଚଳିପାରିବା ସମ୍ଭବ ନୁହେଁ । ତେଣୁ ଭାରତ ସରକାର ବିଦେଶୀ ଶକ୍ତିଙ୍କ ପାଖରେ ଗୋଡ଼ ଭାଙ୍ଗି ଛିଡ଼ାହେବାପଇଁ ବାଧ୍ୟ ହେଉଛନ୍ତି । କିନ୍ତୁ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର କଡ଼ା ତାଗିଦ୍ ରହୁଛି । ସେମାନେ ଆମ ପ୍ରତିଶ୍ରୁତିକୁ ଆଉ ବିଶ୍ୱାସ କରୁନାହାଁନ୍ତି । ନୂଆ ଋଣ ଦେବାକୁ ବିଗ୍ଚର କରିବା ପୂର୍ବରୁ ବାସ୍ତବ କାର୍ଯ୍ୟ ଦେଖିବାପାଇଁ ସେମାନେ ଦାବି କରୁଛନ୍ତି ।

ଅନ୍ୟପକ୍ଷରେ ଆମ ଶାସକମାନେ ଏସବୁ ଉପରେ ଗୁରୁତ୍ୱ ଦେଉନାହାଁନ୍ତି । ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଯେଉଁ ଦଲିଲ ତଥା କାଗଜପତ୍ର ପ୍ରଣୟନ କରୁଛନ୍ତି, ସେସବୁ ପଢ଼ିବାକୁ ସେମାନଙ୍କର ସମୟନାହିଁ । ଅନେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଦେଶ କଥାକୁ ପଛରେ ପକାଇ ଆତ୍ମସ୍ୱାର୍ଥ ସାଧନ ପାଇଁ ନାନା ଫାନ୍ଦ କରୁଛନ୍ତି । ଆମ ଅର୍ଥନୀତିରେ ନୂଆ ନୂଆ ପରିବର୍ତ୍ତନ କରି ବିଦେଶୀ ଅର୍ଥନୀତିର ପ୍ରଭାବକୁ ଅଧିକ ବଢ଼ାଇବାରେ ଲାଗିଛନ୍ତି ।

ବର୍ତ୍ତମାନ ତଳେଇ କରି ବିଗ୍ଚର କରିବା ସତରେ ଆମଦେଶ କେଉଁ ଆଡ଼କୁ ଯାଉଛି ?

## ସମୀକ୍ଷା ଓ ଆଲୋଚନା

ପୂର୍ଣ୍ଣନୁହେଁ ଯେ ଶ୍ରଦ୍ଧା ଓ ପ୍ରେମରେ
ଭଗିନୀ ଯା ବନ୍ଧାନୁହଁଇ ସ୍ନେହରେ

ହୃଦୟ ନାହିଁ ସେଠି ସେ ପଥର ଅଟେ
ନାହିଁ ଯାର ଦେଶପ୍ରୀତିରେ ।
(କ)ଏଇ କଅଣ ଆମ ଭାରତ ?
ଯିଏ ହେଉଛି ଉର୍ବର , ଶସ୍ୟ ଶ୍ୟାମଳା ସିନ୍ଧୁ ନଦୀର ଦେଶ
ଯେଉଁଠି ଥିଲା, ମହେଞ୍ଜୋଦାରୋ ଓ ହରପ୍ପା ଭଳି ସଂସ୍କୃତି
-ଯେଉଁଠି ଥିଲେ ଚରକ ସୁଶ୍ରୁତ ବାଗ୍ ଭଟ୍ଟ ଓ ଜୀନଙ୍କ
-ଯେଉଁଠି ଥିଲେ ଆର୍ଯ୍ୟ ଭଟ୍ଟ ବ୍ରହ୍ମଗୁପ୍ତ
-ବରାହ ମିହିର ଓ ଭାସ୍କର
-ଯେଉଁଠି ତିଆରି ହୋଇଛି ଆଶୋକ ସ୍ତମ୍ଭ , ତାଜମହଲ
ଖ) ଭାରତର ମୌଳିକ ଭିତ୍ତିଭୂମି କ'ଣ ଥିଲା ? ଏହା କିପରି ନଷ୍ଟ ହେଲା ?
ଗ) ଭାରତ ସ୍ୱାଧୀନ ହେବାପରେ ଔପନିବେଶିକ ଶକ୍ତିମାନେ ନୂତନ ଉପାୟରେ କିଭଳି ଶୋଷଣ ଆରମ୍ଭକଲେ ?
ଘ) ସ୍ୱାଧୀନତା ଆନ୍ଦୋଳନ ବେଳେ କେଉଁ ଦୁଇଟି ସ୍ଲୋଗାନ ଉପରେ ଗୁରୁତ୍ୱ ଦିଆହେଉଥିଲା ?
ଙ) ବିକାଶଶୀଳ ଦେଶଗୁଡ଼ିକ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକୁ କିଭଳି ବିରୋଧ କରୁଛନ୍ତି ?
ଚ) ବହୁରାଷ୍ଟ୍ରିୟ କମ୍ପାନୀ ମାନଙ୍କର ସ୍ୱାର୍ଥ ଜଗିବାକୁ ଆମେରିକା କ'ଣ କ'ଣ କରୁଛି ?
ଛ) ଆନ୍ତର୍ଜାତିକ ଅନୁଷ୍ଠାନଗୁଡ଼ିକ ଗୋଟିଏ ଦେଶପାଇଁ ଗୋଟିଏ ଭୋଟ ନୀତି କରିଛନ୍ତି କାହିଁକି ?
ଜ) ସ୍ୱାଧୀନ ପର ଭାରତରେ ଦେଶର ପ୍ରକୃତ ବିକାଶ ହୋଇଛି କି ?
ଝ) ଆମସରକାର ପ୍ରତିଟି ଜିନିଷ ପାଇଁ ଧନୀ ଲୋକଙ୍କ ଉପରେ ନିର୍ଭର କରୁଛନ୍ତି କିପରି ?
ଟ) ଆମ ସରକାର ବାହାରର ଋଣ ଯୋଗାଣକାରୀ ସଂସ୍ଥାମାନଙ୍କଠାରୁ କି କି କାମପାଇଁ ଋଣ ଆଣନ୍ତି ?
ଠ) ସରକାର ଋଣ ସୁଝିବା ପାଇଁ କ'ଣ କରିବା ଦରକାର ? ତାହା ହୋଇପାରୁନି କାହିଁକି ?
ଡ) ପୃଥିବୀର ସବୁଦେଶ ଅପେକ୍ଷା ଭାରତରେ ଅସ୍ତ୍ର ଶସ୍ତ୍ର ଆମଦାନୀ ସର୍ବାଧିକ ।
ଢ) ଆମଦାନୀ କରିବା ଦ୍ବାରା କେବଳ ଋଣ ବଢ଼ି ବଢ଼ି ଚାଲିଛି ।
ଣ) ଭାରତର ବର୍ତ୍ତମାନର ଋଣ ଦୁଇଲକ୍ଷ କୋଟି ଟଙ୍କା , ଅର୍ଥାତ୍ ପ୍ରତି ଭାରତୀୟ ନାଗରିକର ମୁଣ୍ଡପିଛା ଋଣ୧୦ ହଜାର ଟଙ୍କା ।

ଏହି ଋଣକୁ ସୁଝିବା ପାଇଁ ଆମେ ପୁଣି ଋଣ କରୁଛୁ ଏବଂ ଏହିଭଳି ଭାବେ ଋଣର ଯନ୍ତାରେ ଛନ୍ଦିହୋଇ ପଡୁଛୁ ।

ଆର୍ନ୍ତଜାତିକ ଋଣ ଯୋଗାଣକାରୀ ସଂସ୍ଥା ମାନଙ୍କର ଭାରତ ଉପରେ ବିଶ୍ୱାସ ତୁଟି ଯାଉଛି । ଦେଶର ଆତ୍ମନିର୍ଭରଶୀଳତା ସଂପୂର୍ଣ୍ଣ ନଷ୍ଟ ହୋଇଛି । ଆମକୁ କିନ୍ତୁ ମନେରଖିବାକୁ ହେବ ଯେ ଏ ଦେଶରେ ଦିନେ ସ୍ୱଦେଶୀ ଆନ୍ଦୋଳନ ଚାଲିଥିଲା, ଆତ୍ମନିର୍ଭରଶୀଳ ହେବାପାଇଁ ଆଜି ସମସ୍ତେ ସଚେତନ ଭାବେ ଚେଷ୍ଟାକରିବା ଦରକାର ।

## ରାସ୍ତା ହେ ଲମ୍ବା ଭାଇ

ରାସ୍ତା ହେ ଲମ୍ବା ଭାଇ ମନ୍‌ଜିଲ ହେ ଦୂର
ହିମ୍ମତ ସେ ଚଲେଙ୍ଗେ ମିଲ୍‌କେ ଜରୁର
ହମ୍ ହେ ନାଁ ଯେ ଇନ୍‌ସାନ, ହମ୍ ଚଲେଙ୍ଗେ ସିନାତାନ୍
କୋଇଡ଼ର ନେହିଁ ଜବ୍ ହମ୍ ମିଲ୍‌କେ ଚଲତେ ହେଁ
ରାସ୍ତା ହେ ଲମ୍ବା ଭାଇ ....
ଆଗେ ତୋ କଷ୍ଟହେ ରୋସ୍ନି ନେହିଁ
ରାସ୍ତା ନିକାଲେଙ୍ଗେ ରୁକେଙ୍ଗେ ନେହିଁ
ହମ ହେ ନାଁ ଯେ ଇନ୍‌ସାନ୍, ହମ୍ ଚଲେଙ୍ଗେ ସିନାତାନ
କୋଇ ଡ଼ରନେହିଁ ଜବ୍ ହମ୍ ମିଲ୍‌କେ ଚଲତେ ହେଁ
ରାସ୍ତା ହେ ଲମ୍ବା ଭାଇ - - - - -
ଭୂକେ ହେ ଥକେ ହେ କୈସେ ଚଲେଙ୍ଗେ
ସାଥୀ ଯୋଁକି ମଦଦ୍ ସେ ଆଗେ ବଢ଼େଙ୍ଗେ
ହମ୍ ହେ ନାଁ ଯେ ଇନ୍‌ସାନ, ହମ୍ ଚଲେଙ୍ଗେ ସିନାତାନ୍
କୋଇ ଡ଼ର ନେହିଁ ଜବ୍ ହମ୍ ମିଲ୍‌କେ ଚଲତେ ହେଁ
ରାସ୍ତା ହେ ଲମ୍ବା ଭାଇ - - - - - - -

ହମାରା ଦେଶ

# ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ



## ଆଲୋଚନା ମାଳା


ପ୍ରସ୍ତୁତି :-

**ସର୍ବଭାରତୀୟ ଜନ ବିଜ୍ଞାନ ସଂଗଠନ**

**ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା**

ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ,

ଭୁବନେଶ୍ୱର - ୭୫୧ ୦୦୩

# ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ

(ଅଗ୍ରାଧିକାର ଭିତ୍ତିରେ ସ୍ୱାସ୍ଥ୍ୟର ପୁନର୍ସଂଜ୍ଞା ନିରୂପଣ )

## ୨୦୦୦ ମସିହା ସୁଦ୍ଧା ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟ :

"ସର୍ବେସନ୍ତୁ ନିରାମୟା"- ସମସ୍ତେ ନିରୋଗ ରୁହନ୍ତୁ- ଏହା ଆମ ଭାରତ ବର୍ଷରେ ଅତି ପରିଚିତ ପ୍ରାର୍ଥନା । ସମସ୍ତଙ୍କ ଇଚ୍ଛା ସୁସ୍ଥ ଓ ଆନନ୍ଦରେ ଜୀବନ ବଞ୍ଚିବା ।ଏଥିପାଇଁ ପୁରାକାଳରୁ ଆଜିପର୍ଯ୍ୟନ୍ତ , ମଣିଷ ନାନାଭାବରେ ଉଦ୍ୟମ କରି ଆସିଛି ।

୧୯୭୮ ମସିହା ମେ ମାସରେ ସୋଭିୟେତ ଋଷିଆର ଆଲମାଆଟାରେ ଏକ ଆନ୍ତର୍ଜାତୀୟ ସମ୍ମିଳନୀ ବସିଥିଲା । ଏହି ସମ୍ମିଳନୀରେ ଏକ ଗୁରୁତ୍ୱ ପୂର୍ଣ୍ଣ ଘୋଷଣା କରାଯାଇଥିଲା । ତାହା ହେଲା " ୨୦୦୦ ମସିହାସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ । ବିଶ୍ୱସ୍ୱାସ୍ଥ୍ୟ ସଂବିଧାନ ଏହି ଘୋଷଣା ଗ୍ରହଣ କଲା । ଖୁସିରକଥା ଯେ ଆମ ଭାରତ ବି ଏହି ଘୋଷଣାର ସ୍ୱାକ୍ଷରକାରୀ ।

## ୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟର ଅର୍ଥ :

ଏହାର ଅର୍ଥ ହେଉଛି, ୨୦୦୦ ମସିହା ସୁଦ୍ଧା ପୃଥିବୀର ପ୍ରତ୍ୟେକ ବ୍ୟକ୍ତି ଏପରି ଏକ ସ୍ୱାସ୍ଥ୍ୟ ଲାଭ କରିବେ-ଯାହାଫଳରେ ସେ ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ଏକ ଫଳପ୍ରଦ ଜୀବନ ବଞ୍ଚିପାରିବ ।ଏହି ଜନପ୍ରିୟ ସ୍ଲୋଗାନର ପ୍ରଧାନ ଉଦ୍ଦେଶ୍ୟ ହେଉଛି, ଗାଁ ଗହଳିରେ ବସବାସ କରୁଥିବା ଗରିବ ଲୋକମାନେ ଯେପରି ଉତ୍ତମ ସ୍ୱାସ୍ଥ୍ୟ ଉପଭୋଗ କରିପାରିବେ ।

୨୦୦୦ ମସିହା ସୁଦ୍ଧା ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟର ଅର୍ଥ ନୁହେଁ ଯେ - ୨୦୦୦ ମସିହା ବେଳକୁ ପୃଥିବୀର ସବୁଲୋକଙ୍କପାଇଁ ଡ଼ାକ୍ତର ଓ ନର୍ସମାନେ ସ୍ୱାସ୍ଥ୍ୟସେବା ଯୋଗାଇବେ ଓ କେହି ରୋଗ ବେମାରୀରେ ପଡ଼ିବେନାହିଁ । ମାତ୍ର ଏହାର ଅର୍ଥ ହେଉଛି, ପୃଥିବୀରେ ଥିବା ସବୁ ପ୍ରକାର ସ୍ୱାସ୍ଥ୍ୟ ସୁବିଧା ସବୁଲୋକଙ୍କ ସେବାରେ ଲାଗିପାରିବ । ଫଳରେ ସମସ୍ତଙ୍କ ସ୍ୱାସ୍ଥ୍ୟ ଅଧିକତର ଭଲ ରହିବ । କେବଳ ସମସ୍ତେ ସ୍ୱାସ୍ଥ୍ୟ ସେବା ଲାଭକରିବେ, ତାହା ନୁହେଁ; ସ୍ୱାସ୍ଥ୍ୟ ସେବା ସଙ୍ଗେ ସଙ୍ଗେ ସାମାଜିକ ଓ ଅର୍ଥନୈତିକ ବିକାଶ କରାଯିବ ।

# ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟ ସକାଶେ ପ୍ରାଥମିକ ସ୍ୱାସ୍ଥ୍ୟ ସେବା

୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ଯୋଗାଇଦେବାପାଇଁ "ପ୍ରାଥମିକ ସ୍ୱାସ୍ଥ୍ୟ ସେବା" କଥା ୧୯୭୮ ମସିହାରେ, ଆଲମାଆଟାରେ ଆଉଏକ ଆନ୍ତର୍ଜାତୀୟ ଚିନ୍ତା କରାଗଲା । ଯାହାର ମୁଖ୍ୟ ବିଷୟ ଥିଲା -"ଲୋକମାନଙ୍କ ସ୍ୱାସ୍ଥ୍ୟ ଲୋକମାନଙ୍କ ହାତରେ ଅର୍ପଣ କରିବା ।"

ପ୍ରାଥମିକ ସ୍ୱାସ୍ଥ୍ୟ ସେବାର ନିମ୍ନଲିଖିତ କଥା ଗଡ଼ିକୁ ଆନ୍ତର୍ଭୁକ୍ତ କରାଯାଇଥିଲା ।
୧) ଶିକ୍ଷା - ସ୍ୱାସ୍ଥ୍ୟସମସ୍ୟା ଓ ସେସବୁର ପ୍ରତିକାର ଓ ନିୟନ୍ତ୍ରଣ ସମ୍ବନ୍ଧରେ ଶିକ୍ଷା ।
୨) ଖାଦ୍ୟ - ଉପଯୁକ୍ତ ଖାଦ୍ୟ ଖାଇବା ଓ ଖାଦ୍ୟ ଯୋଗାଣରେ ବ୍ୟବସ୍ଥା କରିବା ।
୩) ପାନୀୟଜଳ ଓ ସ୍ୱାସ୍ଥ୍ୟକର ପରିବେଶ - ଆବଶ୍ୟକ ମୁତାବକ ବିଶୁଦ୍ଧ ପାନୀୟ ଜଳ ଓ ସ୍ୱାସ୍ଥ୍ୟକର ପରିବେଶ ପାଇଁ ମୌଳିକ ଆବଶ୍ୟକତା ଗୁଡ଼ିକୁ ଯୋଗାଇବା ।
୪) ମା ଓ ଶିଶୁ ସ୍ୱାସ୍ଥ୍ୟର ଯତ୍ନ ଓ ପରିବାର କଲ୍ୟାଣ ।
୫) ସଂକ୍ରାମକ ରୋଗ ବିରୋଧରେ ପ୍ରତିଷେଧକ ଟିକା ।
୬) ସ୍ଥାନୀୟ ସଂକ୍ରାମକ ରୋଗ ଗୁଡ଼ିକର ପ୍ରତିକାର ଓ ନିୟନ୍ତ୍ରଣ ।
୭) ସାଧାରଣ ରୋଗ ଓ ଖଣ୍ଡିଆ ଖାବରା ହେଲେ ତାର ସଠିକ ଚିକିତ୍ସା ।
୮)ଅତ୍ୟାବଶ୍ୟକୀୟ ଔଷଧ ଯୋଗାଇଦେବା ।

୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ଘୋଷଣା ଅନୁସାରେ ଆମ ସ୍ୱାସ୍ଥ୍ୟ ବ୍ୟବସ୍ଥା କେଉଁଠି ?

୧୯୭୭ ମସିହାରୁ ୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ଘୋଷଣା କରାଗଲାଣି । ମାତ୍ର ଆଜିପର୍ଯ୍ୟନ୍ତ ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟର ଅର୍ଥ ଅନୁସାରେ, ଆମ ଦେଶର ସ୍ୱାସ୍ଥ୍ୟ ବ୍ୟବସ୍ଥା ବହୁତ ପଛରେ ପଡ଼ିଛି । ଆମ ଦେଶରେ ବହୁତ ଭଲ ଭଲ ଡ଼ାକ୍ତରଖାନା ଅଛି । ବହୁତ ଭଲ ଭଲ ଡ଼ାକ୍ତର ମଧ୍ୟ ଅଛନ୍ତି । ଏପରିକି ଅନେକ ଡ଼ାକ୍ତରଖାନା ଓ ଡ଼ାକ୍ତର , ପୃଥିବୀର ସର୍ବୋତ୍ତମ ଡ଼ାକ୍ତରଖାନା ଓ ଡ଼ାକ୍ତରମାନଙ୍କ ସହ ସମାନ କହିଲେ ଅତ୍ୟୁକ୍ତି ହେବନାହିଁ । ମାତ୍ର ଏହା ଆମଦେଶର ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ବୁଝାଇପାରିବ ନାହିଁ । ଦେଶର ଅଧିକାଂଶ ଲୋକେ କେତେ ସୁସ୍ଥରେ ରହିବେ, ତା ଉପରେ ନିର୍ଭର କରୁଛି ଦେଶର ସ୍ୱାସ୍ଥ୍ୟ । ଅଳ୍ପ କେତେଜଣ ସ୍ୱାସ୍ଥ୍ୟ ସୁବିଧା ପାଇଗଲେ ଚଳିବ ନାହିଁ । ସରକାରଙ୍କର ଜାତୀୟ ସ୍ୱାସ୍ଥ୍ୟନୀତି ଅନୁସାରେ - ଆମ ଦେଶର ସ୍ୱାସ୍ଥ୍ୟ ସେବା ଡ଼ାକ୍ତରଖାନା ଓ ରୋଗ ଚିକିତ୍ସା କରିବା ଭିତରେ ସୀମିତ ହୋଇଯାଇଛି । ପୁଣି

ଏହି ସୁବିଧାଟି ସମସ୍ତଙ୍କପାଇଁ ମିଳିପାରୁନି । ସମାଜର ଉପର ସ୍ତରରେ ଲୋକମାନେ ବିଶେଷଭାବରେ, ଯେଉଁମାନେ ସହରାଞ୍ଚଳରେ ବାସ କରୁଛନ୍ତି, ସେମାନେ ପାଇ ପାରୁଛନ୍ତି ।

**ସ୍ୱାଧୀନତା ପରେ ଆମ ଦେଶର ସ୍ୱାସ୍ଥ୍ୟ ବ୍ୟବସ୍ଥା ।**

ଅନ୍ୟଦେଶ ପରାଧୀନ ଥିଲାବେଳେ ଆମର ସ୍ୱାସ୍ଥ୍ୟ ବ୍ୟବସ୍ଥା , ବ୍ରିଟିଶ ସରକାରଙ୍କ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଇଚ୍ଛା ଉପରେ ନିର୍ଭର କରୁଥିଲା । ସେତେବେଳେ ଡ଼ାକ୍ତରୀ ଚିକିତ୍ସା ବ୍ରିଟିଶସରକାରଙ୍କ ସେନାବାହିନୀ, ଓ କର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଜନସାଧାରଣ ଏହି ସ୍ୱାସ୍ଥ୍ୟ ସୁବିଧାରୁ ବଞ୍ଚିତ ହେଉଥିଲେ । ଆମଦେଶରେ ଥିବା ନିଜସ୍ୱ ଚିକିତ୍ସା ପଦ୍ଧତି ଗୁଡ଼ିକ ଯଥା : ଆୟୁର୍ବେଦ, ୟୁନାନି ଓ ସିଦ୍ଧ ଆଦି ଅବହେଳିତ ହୋଇ ରହିଥିଲା । ଦେଶରେ, ମ୍ୟାଲେରିଆ, ଯକ୍ଷ୍ମା, ହଇଜା, ବସନ୍ତ, ପ୍ଲେଗ ଆଦି ସଂକ୍ରାମକ ରୋଗସବୁ ପ୍ରବଳ ମାତ୍ରାରେ ହେଉଥିଲା । ଏ ସବୁ ରୋଗରେ ବହୁତ ଲୋକ ମୃତ୍ୟୁବରଣ କରୁଥିଲେ । ପରେ ପରେ ସ୍ୱାସ୍ଥ୍ୟ ବ୍ୟବସ୍ଥା କେବଳ ସହରାଞ୍ଚଳରେ ଯୋଗାଇ ଦିଆଗଲା । ଗାଁ ଲୋକଙ୍କ ପ୍ରତି ଆଦୌ ଧ୍ୟାନ ଦିଆ ଯାଉନଥିଲା । ସଂକ୍ରାମକ ରୋଗ ବ୍ୟାପିଲାବେଳେ ଗାଁ ଗହଳିପାଇଁ ସ୍ୱାସ୍ଥ୍ୟ ସେବା ଯୋଗାଇବାର ବ୍ୟବସ୍ଥା କରାଯାଉଥିଲା ।

ସ୍ୱାଧୀନତା ପରେ ସମସ୍ତଙ୍କ ପାଖରେ ସ୍ୱାସ୍ଥ୍ୟସେବା ଯୋଗାଇ ଦେବାପାଇଁ ପ୍ରକୃତ ଉଦ୍ୟମ ଆରମ୍ଭ ହେଲା । ଶାସନ ବଦଳିବା ଅନୁସାରେ ଲୋକମାନଙ୍କ ଆଶା ଆକାଂକ୍ଷାକୁ ଆଖିରେ ରଖି ସ୍ୱାସ୍ଥ୍ୟ ପାଇଁ ଯୋଜନାମାନ କରାଗଲା । ସାମଜିକ ଓ ଅର୍ଥନୈତିକ ଅବସ୍ଥାକୁ ସୁଧାରିବାପାଇଁ ଶିଳ୍ପ ଓ କୃଷିର ଉନ୍ନତିପାଇଁ ବି ଏକାସଙ୍ଗରେ ଯୋଜନା କରାଗଲା ।

ସମସ୍ତ ଉନ୍ନତି ମୂଳକ ଯୋଜନା ସତ୍ତ୍ୱେ, ଆମ ଦେଶର ସ୍ୱାସ୍ଥ୍ୟ ବହୁତ ପଛରେ ପଡ଼ିଛି । ଅନେକ ଡ଼ାକ୍ତର ଖାନା ଓ ଡ଼ାକ୍ତର ବଢ଼ିଛନ୍ତି । ଅନେକ ରୋଗ ବି କମିଛି । ମାତ୍ର "୨୦୦୦ ମସିହା ସୁଦ୍ଧା ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟ" ଦୃଷ୍ଟିରୁ ବିଗ୍ଚର କଲେ ଏହା ଆଦୌ ସନ୍ତୋଷ ଜନକ ନୁହେଁ ।

**ଆମ ଦେଶର ସ୍ୱାସ୍ଥ୍ୟ ସମ୍ବନ୍ଧରେ କେତେକ ତଥ୍ୟ :**

୧) କେବଳ ଶତକଡ଼ା ୨୦ ଭାଗ ଲୋକ ଆଧୁନିକ ଡ଼ାକ୍ତରୀ ଔଷଧ ବ୍ୟବହାର କରିପାରୁଛନ୍ତି । ଔଷଧ କିଣିବାପାଇଁ ସମସ୍ତଙ୍କ ପାଖରେ ପଇସା ନାହିଁ ।

୨) ସ୍ୱାସ୍ଥ୍ୟସେବାରେ ଶତକଡ଼ା ୮୪ ଭାଗ ଖର୍ଚ୍ଚ ଘରୋଇ ଭାବରେ କରାଯାଉଛି ।

୩) ଶତକଡ଼ା ୪୦ ଭାଗ ପିଲା ପୁଷ୍ଟିହୀନତା ରୋଗରେ ଆକ୍ରାନ୍ତ , ଅର୍ଥାତ୍, ଉପଯୁକ୍ତ ଖାଦ୍ୟ ଅଭାବରୁ ରୋଗରେ ପଡୁଛନ୍ତି ।

ଆମଦେଶର ଖାଦ୍ୟଉତ୍ପାଦନର ଏକ ହିସାବ ତଳେ ଦିଆଗଲା -
୧୯୬୧ ମସିହାରେ ୮୨ ନିୟୁତ ଟନ୍
୧୯୮୩ ମସିହାରେ ୧୨୪ ନିୟୁତ ଟନ୍

ଖାଦ୍ୟ ଉତ୍ପାଦନ ବଢ଼ିବା ସଂଙ୍ଗେ ସଙ୍ଗେ ଲୋକସଂଖ୍ୟା ଅଧିକ ବଢ଼ିଛି । ତେଣୁ ମୁଣ୍ଡପିଛା ଖାଦ୍ୟର ପରିମାଣ ପୂର୍ବ ଅପେକ୍ଷା ଏବେ କମିଛି ।

ଆଗରୁ ମୁଣ୍ଡପିଛା ଥିଲା ୪୦୦ ଗ୍ରାମ ଚାଉଳ ବା ଗହମ ଜାତୀୟ ଖାଦ୍ୟ ଓ ୬୯ ଗ୍ରାମ ଡ଼ାଲି ଜାତୀୟ ଖାଦ୍ୟ । ବର୍ତ୍ତମାନ ମୁଣ୍ଡପିଛା ଖାଦ୍ୟ ହେଲା ୩୯୨ଗ୍ରାମ ଚାଉଳ ବା ଗହମ ଜାତୀୟ ଖାଦ୍ୟ ଓ ୩୮ ଗ୍ରାମ ଡ଼ାଲି ଜାତୀୟଖାଦ୍ୟ ।

୪) ପ୍ରତିବର୍ଷ ଆମଦେଶରେ ୨୩ ନିୟୁତ ଶିଶୁ ଜନ୍ମ ହେଉଛନ୍ତି । ମାତ୍ର ଜନ୍ମର ପ୍ରଥମ ଏକ ବର୍ଷ ଭିତରେ ଥିବା ପ୍ରାୟ ୨.୫ ନିୟୁତ ଶିଶୁ ମରିଯାଉଛନ୍ତି । ଯେତେ ଜଣ ବଞ୍ଚୁଛନ୍ତି, ସେମାନଙ୍କ ଭିତରୁ ୫ବର୍ଷ ଭିତରେ ପ୍ରତି ୯ ଜଣରେ ଜଣେ ମରିଯାଉଛନ୍ତି ଓ ପ୍ରତି ୧୦ ଜଣରେ ଜଣେ ପୁଷ୍ଟିହୀନତା ରୋଗରେ ପଡୁଛନ୍ତି ।

୫) ଆମଦେଶରେ ଶତକଡ଼ା ୭୫ ଭାଗ ରୋଗ ଖାଦ୍ୟାଭାବ, ଦୂଷିତ ଜଳ ଓ ପ୍ରତିଷେଧକ ଟିକା ନଦେବା ଯୋଗୁଁ ହୋଇଯାଏ ।

୬) ପ୍ରାୟ ଶତକଡ଼ା ୬୭ ଭାଗ ପ୍ରସବ, ଉପଯୁକ୍ତ ଶିକ୍ଷା ପାଇନଥିବା ଧାଈମାନଙ୍କ ଦ୍ୱାରା ହୋଇଥାଏ ।

୭) ଆମଦେଶରେ ଜଣେ ଲୋକ ହାରହାରି ମାତ୍ର ୫୭ ବର୍ଷ ବଞ୍ଚିଥାଏ । ନିକାରାଗୁଆ, ବ୍ରାଜିଲ, ଭିଏତନାମ୍, ବର୍ମା, ପେରୁ ଆଦି ତୃତୀୟ ବିଶ୍ୱର ଦେଶଗୁଡ଼ିକରେ ବି ଏହି ବଞ୍ଚିବା କାଳ ଅଧିକ ଅଟେ ।

୮)ଖାଦ୍ୟରେ ଲୌହ ଅଂଶ ଅଭାବ ଯୋଗୁଁ ଶତକଡ଼ା ୫୦ ଭାଗ ପିଲା ଓ ଶତକଡ଼ା ୬୫ ଭାଗ ସ୍ତ୍ରୀଲୋକ ରକ୍ତହୀନତା ରୋଗରେ ପଡ଼ିଥାନ୍ତି ।

୯) ଶତକଡ଼ା ୭୫ ଭାଗ ଶିଶୁଙ୍କୁ ପ୍ରତିଷେଧକ ଟିକା ଦିଆଯାଇପାରୁନି । ପ୍ରତିଷେଧକ ଟିକା ଦିଆଯାଉ ନଥିବାରୁ ୧.୩ ନିୟୁତ ପିଲା, ଯେଉଁ ରୋଗରୁ ସେମାନଙ୍କୁ ନିଶ୍ଚିତ ଭାବରେ ରକ୍ଷା କରାଯାଇପାରିବ, ସେହି ରୋଗରେ ପଡ଼ି ମୃତ୍ୟୁବରଣ କରୁଛନ୍ତି ।

୧୦) ଆମଦେଶରେ ପ୍ରତିବର୍ଷ ଏକ ତୃତୀୟାଂଶ ଲୋକ ମ୍ୟାଲେରିଆ, ଫାଇଲେରିଆ ଓ କାଲାଜରରେ ଆକ୍ରାନ୍ତ ହେଉଛନ୍ତି ।

୧୧) ପ୍ରତିବର୍ଷ ଆମଦେଶରେ ପ୍ରାୟ ୯୦୦,୦୦୦ ଲୋକ ଯକ୍ଷ୍ମାରୋଗରେ ପଡୁଛନ୍ତି । ସେମାନଙ୍କ ମଧ୍ୟରୁ ୫୫୦,୦୦୦ ମୃତ୍ୟୁବରଣ କରୁଛନ୍ତି ।

୧୨)ଆମଦେଶରେ ପ୍ରାୟ ଅଧା ନିୟୁତ ଲୋକ କୁଷ୍ଠରୋଗୀ । ସମଗ୍ର ପୃଥିବୀର

କୁଷ୍ଠରୋଗୀ ସଂଖ୍ୟାର ଏହା ଏକ ତୃତୀୟାଂଶ ଅଟେ ।
୧୩)ଶତକଡ଼ା ପ୍ରାୟ ୭୦ ଭାଗ ପିଲା କୃମିରୋଗରେ ଆକ୍ରାନ୍ତ ।
୧୪) ପ୍ରତିବର୍ଷ ଝାଡ଼ାରୋଗରେ ୧.୫ ନିୟୁତ ପିଲା ମୃତ୍ୟୁବରଣ କରୁଛନ୍ତି ।

## ସ୍ୱାସ୍ଥ୍ୟ ସେବାପାଇଁ ଦେଶରେ ଖର୍ଚ୍ଚ ହେଉଥିବା ସମ୍ବଳ ଆବଶ୍ୟକତାଠାରୁ ବହୁତ କମ୍

ବିଭିନ୍ନ ପଞ୍ଚବାର୍ଷିକ ଯୋଜନାରେ ସ୍ୱାସ୍ଥ୍ୟପାଇଁ ଯେଉଁ ଖର୍ଚ୍ଚ ଅଟକଳ କରାଯାଇଛି, ତାହା ଆବଶ୍ୟକତାଠାରୁ ବହୁତ କମ୍ । ପୁନଶ୍ଚ ଏହି ଖର୍ଚ୍ଚ ଅଟକଳ ପରବର୍ତ୍ତୀ ପଞ୍ଚବାର୍ଷିକ ଯୋଜନାଗୁଡ଼ିକରେ ଆହୁରି ହ୍ରାସ ପାଇଛି । ଅନ୍ୟପକ୍ଷରେ ଦେଶରେ ଲୋକସଂଖ୍ୟା ବଢ଼ିଚାଲିଛି । ସ୍ୱାସ୍ଥ୍ୟପାଇଁ ଖର୍ଚ୍ଚ ଅଟକଳକରୁ ଜଣାପଡୁଛି, ସ୍ୱାସ୍ଥ୍ୟପାଇଁ କରାଯାଇଥିବା ଖର୍ଚ୍ଚ ବିଲକୁ ଲକ୍ଷ୍ୟକଲେ ଆମେ ଏହା ଭଲଭାବରେ ବୁଝିପାରିବା । ( ତଳେ ଦିଆଯାଇଥିବା ଖର୍ଚ୍ଚ ଅଟକଳରେ ପରିବାର କଲ୍ୟାଣ ଯୋଜନାର ଖର୍ଚ୍ଚକୁ ବାଦ୍ ଦିଆଯାଇଛି ) ।

| ପଞ୍ଚବାର୍ଷିକ ଯୋଜନାକାଳ | ସ୍ୱାସ୍ଥ୍ୟପାଇଁ ଖର୍ଚ୍ଚ ଅଟକଳ (ଶତାଂଶ ଭାଗ) |
|---|---|
| ୧୯୫୧-୫୬ | ୩-୩୨ |
| ୧୯୫୬-୬୧ | ୩.୦୧ |
| ୧୯୬୧-୬୬ | ୨.୬୩ |
| ୧୯୬୯- ୬୯ | ୨.୧୧ |
| ୧୯୬୪-୭୯ | ୧.୯୨ |
| ୧୯୮୦-୮୫ | ୧.୯୨ |
| ୧୯୮୫-୯୦ | ୧.୮୮ |

ଆମଦେଶର ସ୍ୱାସ୍ଥ୍ୟପାଇଁ ସରକାର ଜଣପିଛା ମାସକୁ ମାତ୍ର ୩ଟଙ୍କା ଖର୍ଚ୍ଚକରନ୍ତି । ମାତ୍ର ଘରୋଇ ଭାବରେ ଜଣେ ମାସକୁ ୧୫ ଟଙ୍କା ଖର୍ଚ୍ଚ କରେ । ପୁଣି ସରକାରଙ୍କର ଏହି ସ୍ୱଳ୍ପ ଅର୍ଥ ସମାନ ଭାବରେ ଲୋକମାନଙ୍କ ଭିତରେ ବଣ୍ଟାଯାଇ ପାରେନି । ୮୦ ଭାଗ ଅର୍ଥ ବଡ଼ ବଡ଼ ଡ଼ାକ୍ତରଖାନା ଓ ଗବେଷଣାଗାରରେ ଖର୍ଚ୍ଚହୁଏ । ଏହିସବୁ ବଡ଼ ଡ଼ାକ୍ତରଖାନା ଓ ଗବେଷଣାଗାର ସହରାଞ୍ଚଳରେ ଅବସ୍ଥିତ । ଶତକଡ଼ା ମାତ୍ର ୨୦ ଭାଗ ଲୋକ ସହରାଞ୍ଚଳରେ ବାସ କରନ୍ତି । ଏହି ୨୦ ଭାଗ ଲୋକ ୮୦ ଭାଗ ଅର୍ଥ ଖର୍ଚ୍ଚ ହେଉଥିବା ଡ଼ାକ୍ତରଖାନା ଓ ଗବେଷଣାଗାରର ଉପକାର ପାଆନ୍ତି । ଗାଁ ଗହଳିରେ ଥିବା ପ୍ରାଥମିକ ସ୍ୱାସ୍ଥ୍ୟ ସେବାପାଇଁ ମାତ୍ର ୨୦ଭାଗ ଅର୍ଥ ଖର୍ଚ୍ଚ କରାଯାଉଛି । କିନ୍ତୁ ଏହା ଉପରେ ୮୦ ଭାଗ ଲୋକ ନିର୍ଭର କରନ୍ତି ।

ଆମଦେଶରେ ପ୍ରାୟ ଆଢ଼େଇ ଲକ୍ଷ ଆଲୋପାଥି ଡ଼ାକ୍ତର ଅଛନ୍ତି । ସେମାନଙ୍କ ଭିତରୁ ଶତକଡ଼ା ମାତ୍ର ୨୮ ଭାଗ ଗାଁ ଗହଳିରେ କାମ କରନ୍ତି । ଆଉ ୭୨ ଭାଗ ସହରାଞ୍ଚଳରେ କାମ କରନ୍ତି । ଗାଁ ଗହଳିରେ ସରକାରଙ୍କ ତରଫରୁ ହୋଇଥିବା ସ୍ୱାସ୍ଥ୍ୟକେନ୍ଦ୍ର ଗୁଡ଼ିକରେ ସ୍ୱାସ୍ଥ୍ୟକର୍ମୀମାନେ ରହୁନାହାଁନ୍ତି । ସମୁଦାୟ ସ୍ୱାସ୍ଥ୍ୟକର୍ମୀଙ୍କ ଶତକଡ଼ା ୧୫-୨୫ ଭାଗ ମାତ୍ର ଗାଁ ଗହଳିରେ ରହନ୍ତି । ଲୋକମାନଙ୍କ ପାଖରେ ଆବଶ୍ୟକୀୟ ସ୍ୱାସ୍ଥ୍ୟ ସେବା ଯୋଗାଇ ଦିଆ ଯାଇ ପାରୁନି । ତେଣୁ ସାଧାରଣ ଲୋକେ ଘରୋଇ ସ୍ୱାସ୍ଥ୍ୟ ବ୍ୟବସ୍ଥା ଉପରେ ନିର୍ଭର କରୁଛନ୍ତି । ଏପରି ପରିସ୍ଥିତିମାନ ସୃଷ୍ଟି ହୋଇଛି, ଯଦ୍ୱାରା ବର୍ତ୍ତମାନର ସ୍ୱାସ୍ଥ୍ୟସେବା ବ୍ୟବସାୟରେ ପରିଣତ ହୋଇ ଗଲାଣି । ଅର୍ଥାତ୍ ଯିଏ ଯେପରି ଅର୍ଥ ଖର୍ଚ୍ଚକରିପାରିବ, ସେ ସେପରି ଗୁଣାତ୍ମକମାନର ସ୍ୱାସ୍ଥ୍ୟସେବା ପାଇପାରିବ । ଯାହାର ସମ୍ବଳର ଅଭାବ, ସେ ଉପଯୁକ୍ତ ସ୍ୱାସ୍ଥ୍ୟ ସେବାରୁ ବଞ୍ଚିତ ହେଉଛି ।

ଉପର ଆଲୋଚନାରୁ ଜଣାପଡୁଛି ଯେ ଆମ ଦେଶର ସ୍ୱାସ୍ଥ୍ୟବ୍ୟବସ୍ଥା ବହୁ ତଳେ ପଡ଼ିରହିଛି । ଏଥିପାଇଁ ସରକାରଙ୍କ ତରଫରୁ ବିଶେଷ ଧ୍ୟାନ ଦିଆଯାଉ ନାହିଁ । ମିଳୁଥିବା ସ୍ୱଳ୍ପ ସମ୍ବଳରେ ପରିଚାଳନାଗତ ତ୍ରୁଟି ରହୁଛି ।

ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟକଥା ବିଚାର କରିବାକୁ ହେଲେ, ବର୍ତ୍ତମାନ ଆମକୁ ଆଉଥରେ ସବୁକଥା ଚିନ୍ତାକରିବାର ସମୟ ଆସିଛି ।

## ସ୍ୱାସ୍ଥ୍ୟସେବାର ଘରୋଇ କରଣ

ଗତ କେତେବର୍ଷ ହେଲା, ଘରୋଇ ସ୍ୱାସ୍ଥ୍ୟସେବା ପାଇଁ ଅଧିକ ଉତ୍ସାହ ଯୋଗାଇଦିଆଯାଉଛି । ରୋଗ ଚିକିତ୍ସାପାଇଁ ଘରୋଇ ସଂସ୍ଥାମାନଙ୍କ କ୍ଷେତ୍ରରେ ଅନେକ ଖର୍ଚ୍ଚ କରାଗଲାଣି । । ସରକାରୀ ଉତ୍ସାହପାଇଁ , ପ୍ରଥମ କରି ଆମଦେଶରେ, ଅନେକ ବଡ଼ ବଡ଼ ବ୍ୟବସାୟିକ ଅନୁଷ୍ଠାନମାନେ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ପ୍ରବେଶ କଲେଣି । ଏସବୁ ଗରିବ ଲୋକଙ୍କପାଇଁ ହୋଇନାହିଁ । ଥିଲାବଲାମାନେ ଏଥିରୁ ଉପକୃତ ହୋଉଛନ୍ତି । ସ୍ୱାସ୍ଥ୍ୟ ଯୋଜନାରେ ସରକାରଙ୍କ ପରୋକ୍ଷ ଉଦ୍ଦେଶ୍ୟ ସମ୍ବନ୍ଧରେ ଏଥିରୁ ସୂଚନା ମିଳୁଛି ।

୧୯୮୫ ମସିହାର ବିଶ୍ୱବ୍ୟାଙ୍କ ରିପୋର୍ଟ ଅନୁସାରେ -" ବର୍ତ୍ତମାନ ଅଧିକାଂଶ ବିକାଶଶୀଳ ଦେଶମାନଙ୍କରେ ପ୍ରଚଳିତ ସ୍ୱାସ୍ଥ୍ୟସେବାର ପରିବର୍ତ୍ତନ ଆବଶ୍ୟକ । ସର୍ବସାଧାରଣରୁ ଅଳ୍ପ ପଇସା ବା ବିନା ପଇସାରେ ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ଏକ ବିଫଳ ଯୋଜନା ।" ଅନ୍ୟଭାଷାରେ କହିବାକୁ ଗଲେ, ଏହା

ଘରୋଇ ସ୍ୱାସ୍ଥ୍ୟବ୍ୟବସ୍ଥାକୁ ପୂର୍ଣ୍ଣସମର୍ଥନ ଯୋଗାଉଛି । ଜତୀୟ ସ୍ୱାସ୍ଥ୍ୟ ନୀତି କହୁଛି ଯେ, ସ୍ୱାସ୍ଥ୍ୟସେବାପାଇଁ ସରକାରୀ ଖର୍ଚ୍ଚ ହ୍ରାସ କରାଯାଉ, ଏପର୍ଯ୍ୟନ୍ତ ବ୍ୟବହୃତ ହୋଇନଥିବା ସମ୍ବଳ ଯୋଗାଡ଼ କରାଯାଉ ।ସେହି ଅନୁସାରେ ଯୋଜନା କରାଯାଇଥିବା କାର୍ଯ୍ୟକ୍ରମ ଗୁଡ଼ିକୁ ସ୍ଥାନୀୟ ଆବଶ୍ୟକତା ଓ ସମ୍ଭାବନା ଅନୁସାରେ ପରିବର୍ତ୍ତନ କରାଯାଉ ଯଦ୍ୱାରା, ଘରୋଇ ଚିକିତ୍ସକମାନେ ଉତ୍ସାହିତ ହେବେ ଓ ଘରୋଇ ସ୍ୱାସ୍ଥ୍ୟ ସଂସ୍ଥାମାନେ ଅଧିକ ସମ୍ବଳ ବିନିଯୋଗ କରିବେ ।

ଏସବୁରୁ ଜଣାଯାଉଛି, ସରକାର ଜନସାଧାରଣଙ୍କୁ ସ୍ୱାସ୍ଥ୍ୟ ଯୋଗାଇଦେବା ଭଳି ଏକ ଗୁରୁ ଦାୟିତ୍ୱରୁ ଓହରିଯାଉଛନ୍ତି । ଏକଥା, ସତ୍ୟ ଯେ, ସ୍ୱାସ୍ଥ୍ୟବ୍ୟବସ୍ଥା ଯେତେ ଅଧିକ ଘରୋଇକରଣ ହେବ, ଗରିବ ମଳିମୁଣ୍ଡିଆ ସ୍ୱାସ୍ଥ୍ୟ ସେବା ପାଇବାରୁ ସେତେ ଅଧିକ ବଞ୍ଚିତ ହେବ । ସ୍ୱାସ୍ଥ୍ୟପାଇଁ ଟଙ୍କା ନାହିଁ, ଏକଥା କହି ଆମେ ଲୋକମାନଙ୍କୁ ଭୁଲାଇ ପାରିବା ନାହିଁ ।

ବର୍ତ୍ତମାନ ସରକାର ଖୋଲାଖୋଲି ଭାବରେ କହୁଛନ୍ତି ଯେ ଅନେକ ପ୍ରଚେଷ୍ଟା ସତ୍ତ୍ୱେ ସ୍ୱାସ୍ଥ୍ୟସେବା ବିଫଳ ହୋଇଛି । ଏବେ ବେସରକାରୀ ସଂସ୍ଥା ଓ ଘରୋଇ ସଂସ୍ଥାମାଧ୍ୟମରେ ସ୍ୱାସ୍ଥ୍ୟସେବା, ପରିବାର କଲ୍ୟାଣ କାର୍ଯ୍ୟକ୍ରମମାନ କରିବାପାଇଁ ଉତ୍ସାହିତ କରାଯାଉଛି । ଏଥିରୁ ଜଣାପଡୁଛି, ସମସ୍ତଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇଦେବାର ସାମ୍ବିଧାନିକ କର୍ତ୍ତବ୍ୟରୁ ସରକାର ଓହରି ଯାଇଛନ୍ତି । ବିଶ୍ୱ ବ୍ୟାଙ୍କ ତରଫରୁ ଏବେ ଠିକ୍ ଏଇକଥା ଉଲ୍ଲେଖ କରାଯାଇଛି । ବର୍ତ୍ତମାନ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠିର ଅର୍ଥକୁ ଏଥିପାଇଁ ସଂକୁଚିତ କରାଯାଇଛି । ଆଗରୁ ମାଗଣାରେ ଯୋଗାଇ ଦିଆଯାଉଥିବା ସ୍ୱାସ୍ଥ୍ୟସେବା ଏବେ କେତେକ ସରକାରୀ ଡ଼ାକ୍ତର ଖାନାରୁ ଉଠାଇଦିଆଗଲାଣି । ବେସରକାରୀ ସଂସ୍ଥାମାନଙ୍କୁ ପରିବାରକଲ୍ୟାଣ ଯୋଜନା କାର୍ଯ୍ୟକାରୀ କରିବାପାଇଁ ଦିଆଯାଉଛି । ଫଳରେ ଅନେକ ଜଘନ୍ୟ ଘଟଣାମାନ ଘଟୁଛି । ଉଦାହରଣ ସ୍ୱରୂପ -ମାତ୍ର ୧୦ ବର୍ଷଭିତରେ, ଜଣେିକ ଶଲ୍ୟ ଚିକିତ୍ସକ ଶିବିର ପକାଇ ୨, ୫୦୧୩୬ ଜଣ ମହିଳାଙ୍କୁ ଲାପାରାସ୍କୋପିକ୍ ଅପରେସନ୍ କରିଛନ୍ତି । ଅପରେସନ୍ ପୂର୍ବରୁ ସେ ନମ୍ବର ପକାଇ ମହିଳାମାନଙ୍କ କପାଳରେ ଗୋଟିଏ ଗୋଟିଏ ଷ୍ଟିକର ମାରିଦେଉଥିଲେ । ଶୀଘ୍ର ଶୀଘ୍ର ଅପରେସନ କରିବାପାଇଁ ସେ ମହିଳାମାନଙ୍କୁ ସ୍କୁଲ ବାରଣ୍ଡାରେ ଧାଡ଼ିକରି ସଜେଇ ରଖୁଥିଲେ । ଏହା କଅଣ ମାନବୋଚିତ ବ୍ୟବହାର ? ଏପରି କରିବା ଦ୍ୱାରା ଜନ ସଂଖ୍ୟା ହ୍ରାସ କରିବା ନାରେ ମହିଳାମାନଙ୍କୁ ଛେଳିକୁ ବଳି ପକାଇଲାପରି ବ୍ୟବହାର କରାଯାଉ ନାହିଁକି ?

## ସ୍ୱାସ୍ଥ୍ୟପାଇଁ ଏକ ସାମଗ୍ରିକ ଦୃଷ୍ଟିକୋଣର ଅଭାବ

ଲୋକମାନଙ୍କର ସ୍ୱାସ୍ଥ୍ୟ, ସ୍ୱାସ୍ଥ୍ୟସେବା ପାଇଁ ଥିବା ବ୍ୟବସ୍ଥା ଉପରେ ଅନେକ ଭାବରେ ନିର୍ଭରକରେ। ଏବେ କିନ୍ତୁ ସ୍ୱାସ୍ଥ୍ୟସେବା ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ବିଗ୍ଭର କରାଯାଉଛି । ଏଥିପାଇଁ ଖାଦ୍ୟ, କର୍ମ ସଂସ୍ଥାନ, ରୋଜଗାରର ସୁସମ ବଣ୍ଟନ, ସୁସ୍ଥ ପରିବେଶ, ପାନୀୟଜଳ ଯୋଗାଣ, ରହିବା ଉପଯୋଗୀ ଘର ଇତ୍ୟାଦି ଏକ ସାମଗ୍ରିକ ଦୃଷ୍ଟିକୋଣରୁ ଆଲମାଆଟା ଘୋଷଣାରେ ବିଗ୍ଭର କରାଯାଇଛି ।

ଆଲମାଆଟା ଘୋଷଣା ଅନୁସାରେ ସ୍ୱାସ୍ଥ୍ୟହେଉଛି,ଶାରିରିକ, ମାନସିକ ଓ ସାମାଜିକ ସୁସ୍ଥତା । ଏହା କେବଳ ନିରୋଗ ବା ସୁସ୍ଥ ଓ ସକ୍ଷମ ଶରୀରକୁ ବୁଝାଏ ନାହିଁ । ସ୍ୱାସ୍ଥ୍ୟ ମଣିଷର ମୌଳିକ ଅଧିକାର । ଯେତେଦୂର ସମ୍ଭବ, ଏକ ଉଚ୍ଚ ସ୍ତରର ସ୍ୱାସ୍ଥ୍ୟ ଲାଭ କରିବା ବର୍ତ୍ତମାନ ସାରା ବିଶ୍ୱର ଲକ୍ଷ୍ୟ ଅଟେ । ଏଥିପାଇଁ ସ୍ୱାସ୍ଥ୍ୟ ବିଭାଗ ବ୍ୟତୀତ ଆହୁରି ଅନେକ ସାମାଜିକ ଓ ଅର୍ଥନୈତିକ ବିଭାଗ ଗୁଡ଼ିକର ସ୍ୱାସ୍ଥ୍ୟ ସେମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ବୋଲି ହୃଦୟଙ୍ଗମ କରିବା ଏକାନ୍ତ ଆବଶ୍ୟକ ଅଟେ । ଉପରୋକ୍ତ ସଂଜ୍ଞାରୁ ଏହା ବୁଝାପଡୁଛି ଯେ, ସ୍ୱାସ୍ଥ୍ୟ କେବଳ, ଡ଼ାକ୍ତର,ରୋଗ ଓ ଔଷଧ ଭିତରେ ସୀମିତ ନୁହେଁ । କିନ୍ତୁ ଏପର୍ଯ୍ୟନ୍ତ ଆମଦେଶରେ ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ସ୍ୱାସ୍ଥ୍ୟବ୍ୟବସ୍ଥା, ରୋଗ ଚିକିତ୍ସା ଉପରେ ଅଧିକରୁ ଅଧିକ ଗୁରୁତ୍ୱ ଦେଇ ଆସିଛି ।

## ସ୍ୱାସ୍ଥ୍ୟସେବାରେ ପରିବର୍ତ୍ତନ ଅଣାଯାଇପାରିବ କିପରି ?

ରୋଗ ନିରାକରଣ ଓ ସ୍ୱାସ୍ଥ୍ୟର ଉନ୍ନତି ଦିଗଉପରେ ଗୁରୁତ୍ୱ ନଦେଲେ, ଭାରତ ଭଳି ଦେଶରେ ସ୍ୱାସ୍ଥ୍ୟ ସେବାରେ ପରିବର୍ତ୍ତନ ଆଣିବା ଅସମ୍ଭବ । ଅଧିକାଂଶ ରୋଗ ଦୂର କରିହେବ ଯଦି ଆମେ --

୧) ସମସ୍ତଙ୍କପାଇଁ ପିଇବାପାଣି ଯୋଗାଇ ପାରିବା ।
୨) ଆବଶ୍ୟକ ମୁତାବକ ଉପଯୁକ୍ତ ଖାଦ୍ୟ ଯୋଗାଇ ପାରିବା ।
୩) ସବୁପିଲାଙ୍କୁ ପ୍ରତିଷେଧକ ଟିକା ଦେଇପାରିବା ।
୪) ସାଧାରଣ ରୋଗ ଗୁଡ଼ିକ ସମ୍ବନ୍ଧରେ ସମସ୍ତଙ୍କୁ ସ୍ୱାସ୍ଥ୍ୟଶିକ୍ଷା ଦେଇପାରିବା ।
୫) ସୁସ୍ଥ ଓ ନିର୍ମଳ ପରିବେଶ ଯୋଗାଇ ଦେଇପାରିବା ।

ହିସାବ କରାଯାଇଛି ଯେ - ତରଳ ଝାଡ଼ାରୋଗ, ଆନ୍ତ୍ରିକ ଜ୍ୱର ଆଦି ସଂକ୍ରାମକ ରୋଗଦ୍ୱାରା, ବର୍ଷକୁ ପ୍ରାୟ ୭୩ ନିୟୁତ କାମ ଦିନ ନଷ୍ଟ ହେଉଛି । ରୋଗ

ଚିକିତ୍ସା ବାବଦରେ ଟଙ୍କାଖର୍ଚ୍ଚ ହେଉଛି । ରୋଗରେ ପଡ଼ିବାଯୋଗୁଁ ଦେଶର ଉତ୍ପାଦନ କମୁଛି । ଏସବୁ ହିସାବ କଲେ ଦେଖାଯାଉଛି, ଏଥିପାଇଁ ଦେଶରେ ପ୍ରାୟ ୯୦୦ କୋଟି ଟଙ୍କା କ୍ଷତି ହେଉଛି । ଏହି କ୍ଷତି ହେଉଛି, ସମୁଦାୟ ସ୍ୱାସ୍ଥ୍ୟପାଇଁ ଥିବା ଅର୍ଥ ବରାଦର ଶତକଡ଼ା ୫୦ ଭାଗ ।

ଆମେ ଏପର୍ଯ୍ୟନ୍ତ ସର୍ବନିମ୍ନ ସ୍ୱାସ୍ଥ୍ୟସୁବିଧା ଲୋକମାନଙ୍କପାଖରେ ପହଞ୍ଚାଇବାପାଇଁ ସମର୍ଥ ହୋଇପାରିନାହୁଁ । ୧୯୮୨ ମସିହା ସରକାରୀ ସ୍ୱାସ୍ଥ୍ୟନୀତି ଅନୁସାରେ ଗାଁମାନଙ୍କରେ ଶତକଡ଼ା ମାତ୍ର ୩୧ ଭାଗ ଲୋକଙ୍କପାଇଁ ପିଇବା ପାଣି ଯୋଗାଇ ଦିଆଯାଇଛି । ଶତକଡ଼ା ମାତ୍ର ୦.୫ ଭାଗ ଲୋକ ସାଧାରଣ ସ୍ୱାସ୍ଥ୍ୟକର ପରିବେଶ ପାଇପାରିଛନ୍ତି । ସହରାଞ୍ଚଳରେ ମଧ୍ୟ ଅବସ୍ଥା ତଦନୁରୂପ । ଜାତୀୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଅନୁଷ୍ଠାନ ତରଫରୁ ହୋଇଥିବା ସର୍ବେକ୍ଷଣ ଅନୁସାରେ ସହରାଞ୍ଚଳର ସ୍ୱାସ୍ଥ୍ୟ ଅବସ୍ଥା ଗାଁ ଗହଳିର ସ୍ୱାସ୍ଥ୍ୟ ଅବସ୍ଥାଠାରୁ ଅଧିକ ଖରାପ ଅଟେ ।

ରୋଗ ନିରାକରଣ ପାଇଁ ସ୍ୱାସ୍ଥ୍ୟ ବ୍ୟବସ୍ଥାରେ ପରିବର୍ତ୍ତନ ଲୋଡ଼ା । ଏଥିପାଇଁ କଅଣ କରାଯାଇପାରିବ ? ନିମ୍ନୋକ୍ତ ଦୃଷ୍ଟାନ୍ତଟିକୁ ଲକ୍ଷ୍ୟ କଲେ ଆମେ ଅନେକ କିଛି ବୁଝିପାରିବା । ୧୯୪୦ ମସିହାରେ ଯକ୍ଷ୍ମାରୋଗପାଇଁ ଔଷଧ ବାହାରିଲା । କିନ୍ତୁ ୨୦ ବର୍ଷ ଆଗରୁ ବ୍ରିଟେନରେ ସମସ୍ତଙ୍କପାଇଁ ଉପଯୁକ୍ତ ସ୍ୱାସ୍ଥ୍ୟକର ରହିବା ଘରର ବ୍ୟବସ୍ଥା କରାଗଲା ଏବଂ ଦେଖାଯାଇଥିଲା ଯେ ବ୍ରିଟେନରୁ ଯକ୍ଷ୍ମାରୋଗ ପ୍ରାୟ ବନ୍ଦ ହୋଇ ଯାଇଥିଲା । ମାତ୍ର ବର୍ତ୍ତମାନ ଔଷଧ ବାହାରିବାର ପ୍ରାୟ ୫୦ ବର୍ଷ ପରେ ବି ପ୍ରତିବର୍ଷ ଭାରତରେ ଅଧାନିଯୁତ ଲୋକ ଯକ୍ଷ୍ମାରୋଗରେ ପଡ଼ି ମୃତ୍ୟୁ ବରଣ କରୁଛନ୍ତି । ଅର୍ଥାତ୍ ରୋଗ ନିରାକରଣପାଇଁ ଔଷଧ ଓ ଡ଼ାକ୍ତରଙ୍କ ଆବଶ୍ୟକତା ଠାରୁ ସାଧାରଣ ସ୍ୱାସ୍ଥ୍ୟକର ପରିବେଶ ଅଧିକ ଜରୁରୀ ଅଟେ ।

ଆମଦେଶରେ ସମ୍ବଳର ଅଧିକ ଭାଗ ସହରାଞ୍ଚଳରେ ଖର୍ଚ୍ଚ ହେଉଛି । ରୋଗନିରାକାରଣ ଓ ସ୍ୱାସ୍ଥ୍ୟର ଉନ୍ନତି ଦିଗଟିକୁ ଯେତିକି ଦୃଷ୍ଟି ଦିଆଯାଉନାହିଁ, ତାଠାରୁ ଅଧିକ ଦୃଷ୍ଟି ଦିଆଯାଉଛି, ରୋଗ ଚିକିତ୍ସା କରିବା ଉପରେ । ସ୍ୱାସ୍ଥ୍ୟ ବ୍ୟବସ୍ଥା ଉପରେ ରାଜନୈତିକ ପ୍ରଭାବ ରହୁଛି । ଅନେକ ସମୟରେ ଶାସକ ଦଳର ଇଚ୍ଛା ଓ ଆବଶ୍ୟକତା ଅନୁସାରେ ସମ୍ବଳ, ଲୋକବଳ ଯୋଗାଇ ଦିଆଯାଉଛି ଓ ଆଧୁନିକ ବୈଜ୍ଞାନିକ କୌଶଳକୁ ବ୍ୟବହାର କରାଯାଉଛି ।

ସାମାଜିକ ଅର୍ଥନୈତିକ ଆଦି ସବୁଦିଗକୁ ଆଖିରେ ରଖି ସ୍ୱାସ୍ଥ୍ୟପାଇଁ ଏକ ସାମଗ୍ରିକ ଦୃଷ୍ଟିକୋଣ ଓ ଉଚ୍ଚତର ଚିନ୍ତାଧାରା ଆବଶ୍ୟକ । ଆମ ସ୍ୱାସ୍ଥ୍ୟଯୋଜନାରେ ଏହାର ଅଭାବ ଦେଖାଯାଉଛି ।

### ପ୍ରାଥମିକ ସ୍ୱାସ୍ଥ୍ୟବ୍ୟବସ୍ଥା

୧୯୭୭ ମସିହାରେ ଗ୍ରାମାଭିମୁଖୀ ଗ୍ରାମ୍ୟ ସ୍ୱାସ୍ଥ୍ୟ ଯୋଜନା ଆରମ୍ଭ ହୋଇଥିଲା । ପ୍ରାଥମିକ ସ୍ୱାସ୍ଥ୍ୟ ବ୍ୟବସ୍ଥା ଏହି ଯୋଜନାର ଏକ ମୁଖ୍ୟ ଅଙ୍ଗ ଅଟେ । ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ତଳସ୍ତରପର୍ଯ୍ୟନ୍ତ ପହଞ୍ଚାଇବାପାଇଁ ଏହାକୁ ତିନିସ୍ତରରେ ବିଭକ୍ତ କରାଯାଇଛି ।

୧) ପ୍ରଥମ ସ୍ତର ହେଉଛି ଗାଁ ସ୍ତର - ଏଥିରେ ଦୁଇଟି ଯୋଜନା ଅନ୍ତର୍ଭୁକ୍ତ

କ) ଯଥା - ଗୋଷ୍ଠୀ ସ୍ୱାସ୍ଥ୍ୟକର୍ମୀ (Community Health Workers)

ଖ) ସମନ୍ୱିତ ଶିଶୁ ବିକାଶ ଯୋଜନା (ICDS)

୨) ଦ୍ୱିତୀୟ ସ୍ତର ହେଉଛି - ଉପ ସ୍ୱାସ୍ଥ୍ୟ କେନ୍ଦ୍ର

ପ୍ରତି ୫୦୦୦ ଲୋକଙ୍କପାଇଁ ଏକ ଉପସ୍ୱାସ୍ଥ୍ୟ କେନ୍ଦ୍ର ଥାଏ । ଉପ ସ୍ୱାସ୍ଥ୍ୟକେନ୍ଦ୍ର, ଜଣେ ପୁରୁଷ ବହୁମୁଖୀ ସ୍ୱାସ୍ଥ୍ୟକର୍ମୀ (Male -Multi purpose worker) ଓ ଜଣେ ମହିଳା ବହୁମୁଖୀ ସ୍ୱାସ୍ଥ୍ୟକର୍ମୀଙ୍କ ଦ୍ୱାରା (Female-Multi-purpose worker) ପରିଚାଳିତ ହୋଇଥାଏ ।

୩) ତୃତୀୟ ସ୍ତର- ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର -ପ୍ରତି ୫୦,୦୦୦ ଲୋକଙ୍କପାଇଁ ଏକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରଥାଏ । ପ୍ରତି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ୩ ଜଣ ଡ଼ାକ୍ତର ଥାନ୍ତି । ଓଡ଼ିଶାରେ ଆଗରୁ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ ତିନିଜଣ ଡ଼ାକ୍ତରଥିଲେ । କିନ୍ତୁ ଏବେ ମାତ୍ର ୨ଜଣ ଡ଼ାକ୍ତର ରହିବାର ବ୍ୟବସ୍ଥା ରହିଛି ।

- ଜଣେ ମହିଳା ଡ଼ାକ୍ତର ଓ ଦୁଇଜଣ ପୁରୁଷ ଡ଼ାକ୍ତର । ଡ଼ାକ୍ତରଙ୍କ ଛଡ଼ା ଅନ୍ୟ ସହାୟକ କର୍ମଚାରୀମାନେ ଥାଆନ୍ତି ।

- ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ, ମଳ ମୂତ୍ର କଫ ଆଦି ପରୀକ୍ଷା କରିବାପାଇଁ ସୁବିଧା ଥାଏ । ଛୋଟ ଧରଣର ଅସ୍ତ୍ରୋପଚାର ଆଦି କରିବାପାଇଁ ବି ବ୍ୟବସ୍ଥା ଥାଏ । ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ସ୍ୱାସ୍ଥ୍ୟକର୍ମୀମାନଙ୍କୁ ଟ୍ରେନିଂ ଦିଆଯାଏ , ରେକର୍ଡ଼ ପତ୍ର ରଖାଯାଏ ଏବଂ ନାନା ପ୍ରକାର ଜାତୀୟ ସ୍ୱାସ୍ଥ୍ୟ କର୍ଯ୍ୟକ୍ରମ ଗୁଡ଼ିକ ପାଇଁ ସଂପର୍କ ରଖାଯାଏ ।

ଏହି ତିନିସ୍ତରର ସ୍ୱାସ୍ଥ୍ୟ ବ୍ୟବସ୍ଥାର ଉଦ୍ଦେଶ୍ୟ ହେଲା, ସମସ୍ତଙ୍କ ପାଖରେ ସ୍ୱାସ୍ଥ୍ୟସେବା ପହଞ୍ଚାଇବା । ଏହା ବାଦ୍ ଅନେକ ଜାତୀୟ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମମାନ ରହିଛି, ଯାହା ସହିତ ପ୍ରାଥମିକ ସ୍ୱାସ୍ଥ୍ୟ ବ୍ୟବସ୍ଥାର ସଂପର୍କ ରହିଥାଏ । ଏହି ଜାତୀୟ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମଗୁଡ଼ିକ ଗ୍ରାମ୍ୟ ସ୍ୱାସ୍ଥ୍ୟ ଯୋଜନାରେ ଅନ୍ତର୍ଭୁକ୍ତ ନୁହଁନ୍ତି । ଏଗୁଡ଼ିକୁ ସ୍ୱାଧୀନଭାବରେ କେନ୍ଦ୍ରୀୟ ନିୟନ୍ତ୍ରଣ ଦ୍ୱାରା ପରିଚାଳନା କରାଯାଏ । ଏହି କାର୍ଯ୍ୟକ୍ରମ ଗୁଡ଼ିକ ହେଲା ଟିକାଦାନ, ପରିବାର କଲ୍ୟାଣ, ଯକ୍ଷ୍ମାନିରାକରଣ, ମ୍ୟାଲେରିଆ

ନିରାକରଣ, କୁଷ୍ଠ ରୋଗ ନିରାକରଣ, ଅନ୍ଧତ୍ୱ ନିରାକରଣ, ସମନ୍ୱିତ ଶିଶୁ ବିକାଶ କାର୍ଯ୍ୟକ୍ରମ ଇତ୍ୟାଦି ।

## ସ୍ୱଳ୍ପ ସମ୍ବଳ ଓ ସୁଷମ ବଣ୍ଟନର ତ୍ରୁଟିପାଇଁ ହେଉଥିବା ଅସୁବିଧା

ଆଗରୁ ଆମେ ଆଲୋଚନା କରିଛୁ ଯେ ସ୍ୱାସ୍ଥ୍ୟପାଇଁ ଆବଶ୍ୟକ ମୁତାବକ ଅର୍ଥ ଯୋଗାଇ ଦିଆଯାଉ ନାହିଁ । ମିଳୁଥିବା ଅର୍ଥ ଉପଯୁକ୍ତ ଭାବରେ ବଣ୍ଟା ହୋଇ ପାରୁନି । ଏଥିପାଇଁ ଗ୍ରାମ୍ୟ ସ୍ୱାସ୍ଥ୍ୟ ଯୋଜନାରେ ଅନେକ ଅସୁବିଧା ଦେଖାଯାଉଛି । ସରକାରୀ ତଥ୍ୟ ଅନୁସାରେ - ଗାଁମାନଙ୍କରେ ଜନସଂଖ୍ୟା ଅନୁପାତରେ ମାତ୍ର ଶତକଡ଼ା ୫୦ଭାଗ ସ୍ୱାସ୍ଥ୍ୟକେନ୍ଦ୍ର ଖୋଲାଯାଇପାରିଛି । ଏହି ସ୍ୱାସ୍ଥ୍ୟକେନ୍ଦ୍ରମାନଙ୍କରେ ଦରକାର ମୁତାବକ ଡ଼ାକ୍ତର ଓ କର୍ମଚାରୀ ରଖାଯାଇପାରୁନି ।

ଗାଁ ଗହଳିରେ ରହିବାପାଇଁ ଡ଼ାକ୍ତରମାନେ ଆଗ୍ରହୀ ହେଉନାହାନ୍ତି । ଅନେକ କ୍ଷେତ୍ରରେ ଡ଼ାକ୍ତରଙ୍କ ରହିବାପାଇଁ ସର୍ବନିମ୍ନ ସୁବିଧା ନାହିଁ । ଦେଖାଯାଉଛି, କୁଆଡୁ କିଛି ନମିଳିଲେ, ଡ଼ାକ୍ତରମାନେ ଗାଁକୁ ଯାଉଛନ୍ତି । ସ୍ୱାସ୍ଥ୍ୟସେବାର ଗୁଣାତ୍ମକମାନ ଓ ସ୍ୱାସ୍ଥ୍ୟ କେନ୍ଦ୍ରର ପରିଚାଳନା, ଡ଼ାକ୍ତରମାନଙ୍କ ଅଭିପ୍ରେରଣା ଉପରେ ନିର୍ଭର କରେ । ଡ଼ାକ୍ତରମାନେ ଗାଁ ଗହଳିରେ କାମ କରିବାକୁ ଇଚ୍ଛା ନକରିବା ହେଉଛି, ଆମ ଡ଼ାକ୍ତରୀ ଶିକ୍ଷା ବ୍ୟବସ୍ଥାର ଏକ ବୃହତ୍ତର ତ୍ରୁଟି । ମେଡ଼ିକାଲ କଲେଜମାନଙ୍କରେ ରୋଗ ଚିକିତ୍ସାଉପରେ ଅଧିକ ଗୁରୁତ୍ୱ ସହକାରେ ଶିକ୍ଷା ଦିଆଯାଏ । ଅଧିକାଂଶ ଡ଼ାକ୍ତରୀ ପାଠ, ପାଶ୍ଚାତ୍ୟ ଦେଶମାନଙ୍କର ଅନୁଭୂତି, ପରୀକ୍ଷା ଓ ନିରୀକ୍ଷା ଉପରେ ପର୍ଯ୍ୟବେସିତ । ଏଣୁ ଆମଦେଶର ଗାଁ ଗହଳିର ସ୍ୱାସ୍ଥ୍ୟ, ପଢ଼ାଯାଉଥିବା ଡ଼ାକ୍ତରୀ ବିଦ୍ୟାଠାରୁ ଅନେକ ଦୂରରେ ରହିଥାଏ ।

ରୋଗର ନିଦାନ ନିରୁପଣ କରିବା ପାଇଁ ମେଡ଼ିକାଲ କଲେଜରେ ବଡ଼ ବଡ଼ ଉନ୍ନତ ଯନ୍ତ୍ର ସରଞ୍ଜାମ ବ୍ୟବହାର କରାଯାଇଥାଏ । ଡ଼ାକ୍ତରୀ ଛାତ୍ର ଏଥିରେ ତାଲିମ ପାଇଥାଆନ୍ତି । କିନ୍ତୁ ଗାଁ ଗହଳିରେ ଥିବା ସ୍ୱାସ୍ଥ୍ୟ କେନ୍ଦ୍ରରେ ଏସବୁ ମିଳିନ ଥାଏ । ମେଡିକାଲ କଲେଜରୁ ପାସ୍ କରିଆସିଥିବା ଜଣେ ଉଦୀୟମାନ ଡ଼ାକ୍ତର ସ୍ୱାସ୍ଥ୍ୟକେନ୍ଦ୍ରରେ ପହଞ୍ଚି ହତାଶ ହୋଇପଡ଼େ । ରୋଗ ଚିକିତ୍ସା ପାଇଁ ସୁଦକ୍ଷ ହୋଇପାରେନି ।

ଡ଼ାକ୍ତରୀ ଛାତ୍ରମାନେ ବଡ଼ ବଡ଼ିଆ ଆଦବ କାଇଦାରେ କଲେଜରେ ପଢ଼ିଥାନ୍ତି । ଦୁର୍ଭାଗ୍ୟବଶତଃ ଗାଁ ଗହଳିରେ ଏସବୁପାଇଁ ଆଦୌ ସୁଯୋଗ ମିଳେ ନାହିଁ । ଅଧିକାଂଶ ଡ଼ାକ୍ତରୀ ଛାତ୍ର ଥିଲାବାଲା ପରିବାରରୁ ଆସିଥାନ୍ତି । ଅଧିକାଂଶଙ୍କ

ଘର ସହରାଞ୍ଚଳରେ । ଏମାନଙ୍କପାଇଁ ଗାଁ ଗହଳୀରେ ରହିବା କଷ୍ଟକର ହୋଇପଡ଼େ । ଏପରିକି ଅନେକ ସମୟରେ ଦେଖାଯାଇଛି, ଯେତେବେଳେ ଡ଼ାକ୍ତରୀ ଚାକିରୀ ସହଜରେ ମିଳେ ନାହିଁ, ସେତେବେଳେ ମଧ୍ୟ ଡ଼ାକ୍ତରମାନେ ଗାଁ ଗହଳୀକୁ ଯାଇ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ଚାକିରୀ କରିବାକୁ ଅନିଚ୍ଛା ପ୍ରକାଶ କରନ୍ତି ।

ଏପରିସ୍ଥିତିକୁ ସୁଧାରିବାପାଇଁ ଦୁଇଟି ଦିଗରୁ କାର୍ଯ୍ୟକ୍ରମ ଆରମ୍ଭ କରିବା ଆବଶ୍ୟକ ।

୧) ଡ଼ାକ୍ତରୀ ପାଠ୍ୟକ୍ରମର ପରିବର୍ତ୍ତନ

ଯେଉଁମାନେ ଡ଼ାକ୍ତରୀ ପଢ଼ିବାକୁ ପ୍ରବେଶିକା ପରୀକ୍ଷା ଦେବେ, ସେମାନଙ୍କ ମନୋଭାବକୁ ପରୀକ୍ଷା କରି ବଛାଯିବା ଆବଶ୍ୟକ । ଏପରି ପରୀକ୍ଷା ହେବା ଆବଶ୍ୟକ ଯଦ୍ୱାରା ସମାଜର ବିଭିନ୍ନ ସ୍ତରରୁ ଛାତ୍ରଛାତ୍ରୀମାନେ ଡ଼ାକ୍ତରୀ ପଢ଼ିବାର ସୁଯୋଗ ପାଇବେ ।

୨) ଗାଁ ଗହଳିରେ କାମ କରିବାକୁ ଯେଉଁ ଡ଼ାକ୍ତରମାନେ ଯିବେ ସେମାନଙ୍କ ପାଇଁ ଅଧିକ ପ୍ରୋତ୍ସାହନର ବ୍ୟବସ୍ଥା କରିବାକୁ ହେବ ।

ଡ଼ାକ୍ତରମାନେ ସେବାକରିବାପାଇଁ ଗାଁ ଗହଳୀକୁ ଚାଲିଯିବେ, ଏପରି ଚିନ୍ତା କରିବା ଅବାସ୍ତବ ଅଟେ । ସ୍ୱାସ୍ଥ୍ୟ, ଡ଼ାକ୍ତର ଓ ଔଷଧଦ୍ୱାରା ନିୟନ୍ତ୍ରିତ ବୋଲି ଡ଼ାକ୍ତରମାନଙ୍କ ଭିତରେ ଏ ପର୍ଯ୍ୟନ୍ତ ଧାରଣା ରହିଛି । ଏଭଳି ଧାରଣାକୁ ସମ୍ପୂର୍ଣ୍ଣରୂପେ ବଦଳାଇବାକୁ ହେବ ।

ଡ଼ାକ୍ତରୀ ବିଜ୍ଞାନକୁ ଲୋକମାନଙ୍କ ପାଖରେ ପହଞ୍ଚାଇ ପାରିଲେ, ପ୍ରାଥମିକ ସ୍ୱାସ୍ଥ୍ୟ ବ୍ୟବସ୍ଥାର ସମ୍ପୂର୍ଣ୍ଣ ରୂପାୟନ ହୋଇପାରିବ । କାରଣ ଏ ପର୍ଯ୍ୟନ୍ତ ଡ଼ାକ୍ତରୀ ବିଦ୍ୟା ସାଧାରଣ ଲୋକଙ୍କପାଇଁ ରହସ୍ୟମୟ ହୋଇ ରହିଛି । କିନ୍ତୁ, ଡ଼ାକ୍ତରୀ ତଥା ସ୍ୱାସ୍ଥ୍ୟ ପ୍ରଶାସକମାନଙ୍କ ଭିତରେ ଏକ ନ୍ୟସ୍ତ ସ୍ୱାର୍ଥ ରହିଛି, ଯେଉଁଥିପାଇଁ ସେମାନେ, ସ୍ୱାସ୍ଥ୍ୟ ଜ୍ଞାନକୁ ସାଧାରଣ ଲୋକଙ୍କ ପାଖରେ ସମ୍ପୂର୍ଣ୍ଣ ଖୋଲିଦେବା ପାଇଁ ରାଜି ହୋଇପାରୁ ନାହାନ୍ତି । କାରଣ ଏହାଦ୍ୱାରା ବର୍ତ୍ତମାନର ପଦମର୍ଯ୍ୟାଦାରେ ଅନେକ ଆଞ୍ଚ ଆସିବାର ସମ୍ଭାବନା ରହିଛି ।

ପରିଚାଳନାଦୃଷ୍ଟିରୁ ଗ୍ରାମାଭିମୁଖୀ ସ୍ୱାସ୍ଥ୍ୟ ବ୍ୟବସ୍ଥା ଭିତରେ ରୋଗ ନିୟନ୍ତ୍ରଣ କାର୍ଯ୍ୟକ୍ରମ ଗୁଡ଼ିକ ଅନ୍ତର୍ଭୁକ୍ତ ହେଉନାହିଁ । ଏ ଗୁଡ଼ିକ କେନ୍ଦ୍ରୀୟ ପରିଚାଳନାଧୀନ ହୋଇ ରହୁଛନ୍ତି । ଫଳରେ ଅନେକ ସମୟରେ ତଳ ସ୍ତରରେ ଅନେକ କାମ, କେବଳ ଦୋହରା ହେଉଛି । ଏଥିପାଇଁ ଯେତିକି ମାନବ ସମ୍ବଳ ଓ ଅନ୍ୟାନ୍ୟ ସାଧନ ଅଛି ସେସବୁର ଉଚିତ ବ୍ୟବହାର ହୋଇପାରୁନି । ତେଣୁ ସମସ୍ତ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମର ପରିଚାଳନା, ଗ୍ରାମାଭିମୁଖୀ ସ୍ୱାସ୍ଥ୍ୟ ବ୍ୟବସ୍ଥା ଦ୍ୱାରା ପରିଚାଳିତ ହେବା ଆବଶ୍ୟକ ।

## ସ୍ୱାସ୍ଥ୍ୟପାଇଁ ଜନସାଧାରଣଙ୍କ ସହଯୋଗ

"ଲୋକମାନଙ୍କ ସ୍ୱାସ୍ଥ୍ୟ ଲୋକମାନଙ୍କ ହାତରେ ଅର୍ପଣ କରିବା" ବର୍ତ୍ତମାନ ଏହି ସ୍ଲୋଗାନଟି ଅତି ପରିଚିତ ହୋଇଗଲାଣି । ସମସ୍ତେ ଭଲ ଭାବରେ ବୁଝିଛନ୍ତି ଯେ, ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ବିକେନ୍ଦ୍ରୀକରଣ ନକଲେ, ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ କଥା ଚିନ୍ତା କରିହେବନି । ଦୁଃଖର ବିଷୟ ଏହି ଯେ, ଏ ପର୍ଯ୍ୟନ୍ତ ଜନସାଧାରଣଙ୍କ ହାତରେ ସେମାନଙ୍କ ସ୍ୱାସ୍ଥ୍ୟକୁ ଅର୍ପଣ କରିବା - ଏ କଥାଟିକୁ କେହି ଠିକ୍ ଭାବରେ ହୃଦୟଙ୍ଗମ କରିନାହାନ୍ତି । ଅନେକ ବୁଝନ୍ତି, ଏହାର ଅର୍ଥ ହେଉଛି ସମସ୍ତେ ସ୍ୱାସ୍ଥ୍ୟ ସୁବିଧା ଲାଭ କରିପାରିବେ ।

ଜନସାଧାରଣ ସେମାନଙ୍କ ସ୍ୱାସ୍ଥ୍ୟସୁବିଧା ଓ ସ୍ୱାସ୍ଥ୍ୟ ବ୍ୟବସ୍ଥା ସମ୍ବନ୍ଧରେ ଅବଗତ ହୋଇ, ସେମାନଙ୍କ ସ୍ୱାସ୍ଥ୍ୟ ପାଇଁ ନିଜେ ନିଷ୍ପତ୍ତି ନେବା ଆବଶ୍ୟକ । ନିଜ ଅଂଚଳରେ କେଉଁ ପ୍ରକାର ସ୍ୱାସ୍ଥ୍ୟ ବ୍ୟବସ୍ଥା ଓ ସ୍ୱାସ୍ଥ୍ୟ ସୁବିଧା ଆବଶ୍ୟକ, ତାହା ଜନସାଧାରଣ ନିଜେ ବିଚାର କରି ଯୋଜନା ପ୍ରସ୍ତୁତ କରିବା ଦରକାର । ଏସବୁ ପାଇଁ, ଦୃଢ଼ ରାଜନୈତିକ ସଦିଚ୍ଛା ଆବଶ୍ୟକ । ଲୋକଙ୍କ ହାତରେ, ସେମାନଙ୍କ ସ୍ୱାସ୍ଥ୍ୟ ଅର୍ପଣ କରିବାକୁ ହେଲେ, ପଞ୍ଚାୟତ ସମିତି ଗୁଡ଼ିକ ସକ୍ରିୟ ଭାବରେ ଏହାର ଦାୟିତ୍ୱ ଗ୍ରହଣ କରିବା ଏକାନ୍ତ ଆବଶ୍ୟକ । ସେଥିପାଇଁ ଆଜିଠାରୁ ଯତ୍ନଶୀଳ ହେବାକୁ ପଡ଼ିବ । ଏପରି ନହେଲେ ସ୍ୱାସ୍ଥ୍ୟ କ୍ଷେତ୍ରରେ ବିଶେଷ କିଛି ପରିବର୍ତ୍ତନ ହୋଇପାରିବ ନାହିଁ ।

ଆଜିହିଁ ଆମକୁ ଆମ ସ୍ୱାସ୍ଥ୍ୟ ସମ୍ବନ୍ଧରେ ନିଷ୍ପତ୍ତି ନେବାକୁ ହେବ । ସମସ୍ତେ କିପରି ନିରୋଗ ରହିବେ, ସୁଖରେ ବଞ୍ଚିବେ, ସେଥିପାଇଁ, ଯୋଜନା କରିବାକୁ ହେବ ।

## ନାରୀ ଓ ସ୍ୱାସ୍ଥ୍ୟ

ନାରୀର ସ୍ୱାସ୍ଥ୍ୟ ଅର୍ଥ ସାଧାରଣତଃ ସମସ୍ତେ ଧରିନିଅନ୍ତି ଗର୍ଭଧାରଣ, ପିଲାଜନ୍ମ ଓ ପିଲାର ସ୍ୱାସ୍ଥ୍ୟ ଗର୍ଭନିରୋଧ, ଗର୍ଭପାତ ଇତ୍ୟାଦି । ଗର୍ଭଧାରଣ କରି ପିଲା ଜନ୍ମ କରିବା ନାରୀର ଭୂମିକା ବୋଲି ଅନେକଙ୍କରମତ । ସ୍ୱାସ୍ଥ୍ୟ କ୍ଷେତ୍ରରେ ବି ଏହି ଧାରଣାର ଅନେକ କିଛି ପ୍ରଭାବ ପଡ଼ିଛି । ଉପରେ ବର୍ଣ୍ଣନା କରାଯାଇଥିବା ସ୍ତ୍ରୀରୋଗ ବା ସମସ୍ୟାକୁ ନେଇ ସାରା ପୃଥିବୀରେ ନାନା ପ୍ରକାର ଔଷଧ ବାହାର କରାଯାଇଛି । ଏଭଳି ଔଷଧସବୁ ବାହାରୁଛି ଯାହା ଉପରେ କୌଣସି ନିୟନ୍ତ୍ରଣ ରଖିବା ସହଜ ହେଉନାହିଁ ।

ଭାରତଭଳି ଦେଶରେ ଏଭଳି ଯୁକ୍ତି ବାରମ୍ବାର ଉଠୁଚି ଯେ ନାରୀ ସ୍ୱାସ୍ଥ୍ୟ ଅବସ୍ଥା ଖରାପ ହେବାର କାରଣ ପିଲାଜନ୍ମ ସହ ଜଡ଼ିତ । କିନ୍ତୁ ଏହା ଯେ ସଂପୂର୍ଣ୍ଣ ଭିତ୍ତିହୀନ ତାହା ନିମ୍ନୋକ୍ତ ତଥ୍ୟରୁ ଜଣାପଡ଼େ । ୯ ବର୍ଷ ବୟସ ଭିତରେ ଅଧିକ ଝିଅପିଲା ମୃତ୍ୟୁବରଣ କରନ୍ତି । ପ୍ରଜନନ କ୍ଷମ ବୟସରେ ଗର୍ଭଧାରଣ ଓ ସେହିଭଳି କାରଣରୁ ମାତ୍ର ଶତକଡ଼ା ୧୧ଭାଗ ସ୍ତ୍ରୀ ଲୋକ ମୃତ୍ୟୁବରଣ କରିଥାନ୍ତି । ଅନେକ ଜାଗାରେ ତଥ୍ୟ ସଂଗ୍ରହ କରି ଜଣା ଯାଇଛି ଯେ ଅଧିକାଂଶ କନ୍ୟା ଶିଶୁ ଖାଦ୍ୟାଭାବ ଜନିତ ରୋଗରେ ଆକ୍ରାନ୍ତ ।ଏକଥା ବି ଦେଖା ଯାଇଛି ଯେ ସ୍ତ୍ରୀ ଲୋକମାନେ ମିଳୁଥିବା ସ୍ୱାସ୍ଥ୍ୟ ସୁବିଧାକୁ ବହୁତ କମ୍ ବ୍ୟବହାର କରନ୍ତି ।

ଏସବୁ କାରଣ ଜାଣିବା ସତ୍ତ୍ୱେ ଆମେ ନାରୀର ସ୍ୱାସ୍ଥ୍ୟପାଇଁ ଗର୍ଭଧାରଣ ଓ ପ୍ରସବ ଜନିତ ସମସ୍ୟା ଉପରେ ଅଧିକ ଗୁରୁତ୍ୱ ଦେଉଛୁ । ଏଥିପାଇଁ ସ୍ତ୍ରୀରୋଗ ଓ ପ୍ରସୂତି ବିଭାଗମାନ ଖୋଲା ଯାଇଛି । ମହିଳା ମହାବିଦ୍ୟାଳୟ ଖୋଲିଲା ପରି ମହିଳା ସ୍ୱାସ୍ଥ୍ୟକେନ୍ଦ୍ର ଆମ ସମାଜରେ ଖୋଲାଯାଇନାହିଁ । ମହିଳା ସ୍ୱାସ୍ଥ୍ୟକର୍ମୀଙ୍କୁ ଆମେ ନୀଚ ନଜରରେ ଦେଖୁଛୁ । ତେଣୁ ସେମାନଙ୍କୁ ଆମେ ଏ.ଏନ୍.ଏମ୍. ବା ସହାୟକ ନର୍ସ ଭାବରେ ବୋଲି କହୁଚୁ । ଏ ମନୋବୃତ୍ତିର ନିହାତି ପରିବର୍ତ୍ତନ ଆବଶ୍ୟକ ।

କେବଳ ସେତିକି ନୁହେଁ ଆମକୁ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଉପରେ ଅଧିକ ଦୃଷ୍ଟି ଦେବାକୁ ପଡ଼ିବ । ଏ ଦିଗରେ ନାହିଁ ନଥିବା ଟଙ୍କା ଖର୍ଚ୍ଚ ହେଲାଣି । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଏବାବଦରେ ମାତ୍ର ୦.୧୪ କୋଟି ଟଙ୍କା ଖର୍ଚ୍ଚ କରାଯାଇଥିବା ବେଳେ ପଞ୍ଚମ ଯୋଜନାରେ ୪୦୯ କୋଟି, ୬ଷ୍ଠ ଯୋଜନାରେ ୧୪୨୪ କୋଟି ଓ ସପ୍ତମ ଯୋଜନାରେ ୩୨୫୬ କୋଟି ଟଙ୍କା କରାଗଲାଣି । ଏସବୁ ସତ୍ତ୍ୱେ ଗତ ଦଶବର୍ଷ ହେଲା ଶିଶୁଜନ୍ମ ହାର କମିନାହିଁ । ପ୍ରାୟ ୧୦୦୦ରେ ୩୦ ଆଗଭଳି ସ୍ଥିର ଅଛି । ତେଣୁ ଟଙ୍କା ଅଧିକ ଖର୍ଚ୍ଚ ହେବାଟା ଉଚିତ୍ ହୋଇଛି ବୋଲି ଆମେ କିପରି କହିପାରିବା ।

କେବଳ ବୈଜ୍ଞାନିକ କୌଶଳ ହାସଲ କଲେ ଏଭଳି ସମସ୍ୟା ସବୁ ସାମଧାନ ହୋଇଯିବନି । କାରଣ ଏସବୁ ସମସ୍ୟା ସାମାଜିକ ଅର୍ଥନୈତିକ ସମସ୍ୟାସହ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଏଥିପାଇଁ ସାମାଜିକ ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ପୁଣି ପରିବାର କଲ୍ୟାଣ କାର୍ଯ୍ୟକ୍ରମର ଲକ୍ଷ୍ୟ ଧାର୍ଯ୍ୟ କରି ଦିଆଯାଇଛି । ଯାହାକି ଦୁର୍ବଳ ସ୍ୱାସ୍ଥ୍ୟ ବ୍ୟବସ୍ଥା ଦ୍ୱାରା ଠିକ୍ ଭାବରେ କାର୍ଯ୍ୟକାରୀ କରିବା ସମ୍ଭବ ହୋଇପାରୁନାହିଁ । ଗ୍ରାମ୍ୟ ସ୍ୱାସ୍ଥ୍ୟ ବ୍ୟବସ୍ଥାରେ ସ୍ୱାସ୍ଥ୍ୟର ଅନେକ ଦିଗ ଗୁଡ଼ିକ ସହ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ମଧ୍ୟ ସଂହତି ରହିବା ଏକାନ୍ତ ଆବଶ୍ୟକ ।

## ଜନ୍ମ ନିରୋଧ ବ୍ୟବସ୍ଥା :

ବର୍ତ୍ତମାନ ସବୁପ୍ରକାର ପ୍ରଗ୍ରର ସତ୍ତ୍ୱେ ଜନ୍ମ ନିରୋଧ କାର୍ଯ୍ୟକ୍ରମ ସମାଲୋଚିତ ହେଲାଣି । ଜନ୍ମ ନିରୋଧ କାର୍ଯ୍ୟକ୍ରମରେ ଅନେକ କଳ ବିନିଯୋଗ ଓ ଆଧୁନିକ ଡ଼ାକ୍ତରୀ ବିଦ୍ୟାର କୌଶଳ ଉପଯୋଗ କରାଯିବା ସତ୍ତ୍ୱେ ଶିଶୁ ଜନ୍ମହାର, ଆଶାନୁରୂପ କମି ନାହିଁ । ଅଧିକ ଶିଶୁ ଜନ୍ମ ହାରର କାରଣ ଅନେକ, ଯଥା - ଅଧିକ ଶିଶୁ ମୃତ୍ୟୁହାର, ନାରୀଶିକ୍ଷାର ଅଭାବ, ଗରୀବ ପରିବାରରେ ଅର୍ଥନୈତିକ ସମସ୍ୟା । ଶିଶୁଜନ୍ମହାର କମିଲେ ଅର୍ଥନୈତିକ ଅବସ୍ଥାରେ ଉନ୍ନତି ହେବ ବୋଲି ଜନସଂଖ୍ୟା ପରିସଂଖ୍ୟକମାନେ କହୁଛନ୍ତି । ମାତ୍ର କଥାଟା ଓଲଟା ଦେଖାଯାଉଛି । ଯେଉଁମାନଙ୍କର ଅର୍ଥନୈତିକ ଅବସ୍ଥା ଉନ୍ନତ ସେହିମାନଙ୍କର ଶିଶୁ ଜନ୍ମହାର କମ୍ । ଆମଦେଶର କେରଳ ରାଜ୍ୟରେ ଶିଶୁ ଜନ୍ମହାର ସବୁଠାରୁ କମ୍ । ମନେ ରଖିବାକୁ ହେବ ଯେ ଏ ରାଜ୍ୟରେ ପ୍ରଥମେ ଭୂସଂସ୍କାର କରାଯାଇଥିଲା ଓ ଏଠାରେ ସାକ୍ଷରତା ହାର ଦେଶର ସବୁରାଜ୍ୟଠାରୁ ଅଧିକ । ସବୁ ଜାଣିବା ସତ୍ତ୍ୱେ ବି ବର୍ତ୍ତମାନ ପରିବାର କଲ୍ୟାଣ ନାଁରେ ଜନ୍ମ ନିରୋଧ ଉପରେ ଅଧିକ ଗୁରୁତ୍ୱ ଦେଇ ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ନିୟୋଗ କରାଯାଉଛି । ନାରୀ ଓ ପ୍ରଜନନ ପ୍ରକ୍ରିୟା ଉପରେ ସ୍ୱାସ୍ଥ୍ୟ ସେବା ଅଗ୍ରାଧିକାର ଦେଇ କାମ କରୁଛି । ପ୍ରଜନନ କମାଇବା ପାଇଁ ବିଜ୍ଞାନର କୌଶଳମାନ ବ୍ୟବହୃତ ହେଉଛି । ସବୁଠାରୁ ନିରାପଦ ବୋଲି ଘୋଷଣା କରାଯାଉଥିବା ଜନ୍ମନିରୋଧ ଉପାୟଟିକୁ ସ୍ତ୍ରୀ ଲୋକମାନଙ୍କ ଉପରେ ପ୍ରୟୋଗ କରାଯାଉଛି । କିନ୍ତୁ ପୁଣି କେତେବର୍ଷପରେ ସେହି ଉପାୟଟି ନିରାପଦ ନୁହେଁ ବୋଲି ଜଣାପଡୁଛି ।

## ହରମୋନରୁ ହେଉଥିବା ଜନ୍ମ ନିରୋଧ ଔଷଧ :

ପ୍ରଥମେ ଯେଉଁ ଜନ୍ମ ନିରୋଧକ ହରମୋନ ପ୍ରସ୍ତୁତି ବାହାରିଲା ତାହା ସ୍ତ୍ରୀ ହରମୋନରୁ ତିଆରି ହୋଇଥିଲା । ସେଗୁଡ଼ିକ ହେଲା ପ୍ରୋଜିଷ୍ଟେରନ ଓ ଇଷ୍ଟ୍ରୋଜେନ । ଅଲଗା ଅଲଗା ଭାବରେ ବା ଏକାଠି ମିଶିଲେ ଉଭୟ ଜନ୍ମନିରୋଧକ ଔଷଧ ଭାବରେ ବ୍ୟବହୃତ ହୁଅନ୍ତି । ଏଗୁଡ଼ିକ ପିଲ୍ ନାମରେ ଜଣାଶୁଣା । ଆଜକୁ ପ୍ରାୟ ଦୀର୍ଘ ୩୦ ବର୍ଷ ହେଲା ଏହି ପିଲ୍‌ଗୁଡ଼ିକ ବ୍ୟବହୃତ ହୋଇ ଆସୁଛି, ମାତ୍ର ଏବେ ଜଣାପଡୁଛି ଏହିବଟିକା ଖାଇବା ଦ୍ୱାରା ଏହାର ଦୀର୍ଘସୂତ୍ରୀ କୁପ୍ରଭାବ ଶରୀର ଉପରେ ରହୁଛି । ଯେତେବେଳେ ପ୍ରଥମେ ଏହା ବ୍ୟବହାର କରାଗଲା ସେତେବେଳେ ଯୁକ୍ତି କରାଯାଇଥିଲା ଯେ ଏହି ପିଲ୍ ହେଉଛି ଦେହରୁ ବାହାରୁଥିବା ହରମୋନ ଭଳି । ମାତ୍ର

ଏହାର ବି ଖରାପ ପ୍ରଭାବ ରହିଚି, ଯଥା - ମାନ୍ଦା ଲାଗିବା, ଯକୃତ୍ ସମସ୍ୟା ମୁଣ୍ଡବିନ୍ଧା, ଓଜନବୃଦ୍ଧି, ଉଚ୍ଚ ରକ୍ତଚାପ, ଧମନୀ ଓ ଶିରରେ ରକ୍ତ ଜମାଟ ବାନ୍ଧିବା ଦୁର୍ବଳହେବା, ମୁହଁରେ ଦାଗ ବାହାରିବା ଇତ୍ୟାଦି । ପ୍ରମାଣ ମିଳିଲାଣି ଯେ ଏହି ବଟିକା ଅଧିକ ଦିନ ବ୍ୟବହାର କଲେ ସ୍ତ୍ରୀ ଲୋକମାନଙ୍କର ସ୍ତନ କର୍କଟ ଦେଖାଯାଉଛି ।

ଆଗରୁ ଏହି ବଟିକା ଅଧିକ 'ମାତ୍ରା' ବିଶିଷ୍ଟ ହେଉ ଥିଲା । ଅନେକ ଦେଶ ଏଥିପାଇଁ ବିରୋଧ କଲେ । ବର୍ତ୍ତମାନର ବଟିକାରେ ଆଗ ଅପେକ୍ଷା ବହୁତ କମ୍ ପରିମାଣରେ ହରମୋନ୍ ବ୍ୟବହାର କରାଯାଉଛି । କିନ୍ତୁ ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏହି ବଟିକାର 'ମାତ୍ରା' କେତେ ହେବା କଥା ତାହା ଏତେଦିନପରେ ଜଣାପଡ଼ିଲା । ଅର୍ଥାତ୍ ଏତେଦିନ ପର୍ଯ୍ୟନ୍ତ ଏତେ ସ୍ତ୍ରୀଲୋକ ସେହି ଭୁଲ୍ 'ମାତ୍ରା'ର ବଟିକାକୁ ବ୍ୟବହାର କରୁଥିଲେ ।

ବର୍ତ୍ତମାନ ନୂଆ ନୂଆ ରକମର ହରମୋନ ପ୍ରସ୍ତୁତି ବାହାରିଲାଣି । ଏଥିରୁ କରି ଦୁଇଟି କଥା ପରିଲକ୍ଷିତ ହେଉଛି । ଗୋଟିଏ ହେଲା କେତେକ ପ୍ରକାରର ହରମୋନ୍ ପ୍ରସ୍ତୁତି, ମାତ୍ର ଅଳ୍ପ କେତେ ସପ୍ତାହରୁ ଆରମ୍ଭକରି ୨।୩ ବର୍ଷ ପର୍ଯ୍ୟନ୍ତ କାମ କରି ତାପରେ ଆଉ କାମ କରେନି । ଦ୍ୱିତୀୟରେ ଏସବୁର ବ୍ୟବହାର ପାଇଁ ବା ପରେ ପରେ ଏସବୁର କୁ ପ୍ରଭାବପାଇଁ ଡ଼ାକ୍ତରୀ ପରାମର୍ଶ ଆବଶ୍ୟକ ହେଉଛି । ଏଥିରୁ କେତୋଟିର ଉଦାହରଣ ହେଲା ବେଟ୍ଏନ୍, ଡ଼ିପୋଟ ପ୍ରୋଭେରା, ନରପ୍ଲାଣ୍ଟ ଇତ୍ୟାଦି । ଆଗରୁ ବ୍ୟବହାର କରାଯାଉଥିବା ସାଧାରଣ ଜନ୍ମ ନିରୋଧ ବଟିକାର ଯେଉଁ ଯେଉଁ କୁ ପ୍ରଭାବ ଦେଖାଯାଇଥିଲା ଏହି ନୂଆ ବଟିକାରେ ମଧ୍ୟ ସେହି କୁ ପ୍ରଭାବ ଦେଖାଗଲା । କିନ୍ତୁ ଗୋଟିଏ ପାର୍ଥକ୍ୟ ହେଲା ଏ ନୂଆ ବଟିକା ଥରେ ବ୍ୟବହାର କଲେ ତା'ର ପ୍ରଭାବ ଅନେକ ଦିନ ଧରି ଶରୀରରେ ରହିଥାଏ । ତେଣୁ ତା'ର କୁ ପ୍ରଭାବକୁ ଜାଣିପାରି ତାକୁ ବ'ନ୍ଦ କରିବାକୁ ଚାହିଁଲେ ମଧ୍ୟ ହଠାତ୍ ଦେହ ଭିତରୁ ତା'ର କୁପ୍ରଭାବ ଦୂରକରି ହୁଏ ନାହିଁ । ଏହି ହରମୋନ ପ୍ରସ୍ତୁତିକୁ ବ୍ୟବହାର କଲେ ଭଲ ଭାବରେ ଡ଼ାକ୍ତରୀ ପରାମର୍ଶ ଲାଭ କରିବା ଦରକାର । କିନ୍ତୁ ଅତି ଦୁଃଖର କଥା ଏହି ଯେ ଆମର ଗ୍ରାମାଞ୍ଚଳ ଗୁଡିକରେ ଯେଉଁଠାରେ ସ୍ତ୍ରୀଲୋକମାନେ ଏହାକୁ ବହୁଳ ଭାବରେ ବ୍ୟବହାର କରିଥାନ୍ତି ସେଠାରେ ଡ଼ାକ୍ତରୀ ସ୍ୱାସ୍ଥ୍ୟ ସେବାର ଅଭାବ ରହିଛି, ପ୍ରକୃତରେ ଏହି ହରମୋନ ପ୍ରସ୍ତୁତିର ପରୀକ୍ଷା ଯେତେବେଳେ ଏକ ସହରାଞ୍ଚଳରେ କରାଯାଇଥିଲା, ଦେଖାଗଲା ଅନେକ କ୍ଷେତ୍ରରେ ତା'ର ପରବର୍ତ୍ତୀ ସମୟରେ ଯତ୍ନ ନିଆଯାଇପାରିନି । ଯଦି ଏକ ସହରାଞ୍ଚଳରେ ଏପରି ହେଉଛି ତେବେ ଗ୍ରାମାଞ୍ଚଳ କଥା ଆମେ କ'ଣ ଭାବିବା ?

**ଅନ୍ତଃ ଗର୍ଭାଶୟ ଜନ୍ମ ନିରୋଧ ପଦ୍ଧତି :**

(ଆଇ.ୟୁ.ଡ଼ି) ଆଇ.ୟୁ.ଡ଼ି. କହିଲେ ସମସ୍ତେ ବୁଝନ୍ତି କପରଟି ବା ଲୁପ୍ । ପ୍ରଥମେ ଏହା ଜର୍ମାନରେ ବ୍ୟବହାର କରାଯାଇଥିଲା । ଏହା ପ୍ଲାଷ୍ଟିକ ଏବଂ ଏକ ଧାତୁରେ ତିଆରି । ତା'ଉପରେ ତମ୍ବା ତା'ରର ଆସ୍ତରଣ ଥାଏ । ଏହାକୁ ଅତି ସହଜରେ ଗର୍ଭାଶୟ ଭିତରେ ରଖାଯାଇପାରେ । ଏଥି ଯୋଗୁଁ ଗର୍ଭାଶୟରେ ଭ୍ରୂଣଟିଏ ସ୍ଥାପିତ ହେବାରେ ବାଧାସୃଷ୍ଟି ହୁଏ । ଏହା ବ୍ୟବହାର କଲେ ବେଳେ ବେଳେ ମାସିକ ଋତୁସ୍ରାବ ସମୟରେ ଅଧିକ ରକ୍ତସ୍ରାବ ହୁଏ, ତଳି ପେଟରେ ଅଧିକ ଯନ୍ତ୍ରଣା ହୁଏ ଏବଂ ଅନେକ ସମୟରେ ଆପେ ଆପେ ଗର୍ଭପାତ ମଧ୍ୟ ହୋଇଯାଇଥାଏ । ଆହୁରି ମଧ୍ୟ ଗର୍ଭାଶୟର ବିଭିନ୍ନ ଅଂଶରେ ନାନାପ୍ରକାର ରୋଗ ଦେଖାଯାଇଥାଏ । ଏହାକୁ ଡ଼ାକ୍ତରୀ ଭାଷାରେ (Pelvic Inflammatory diseases) ବୋଲି କୁହାଯାଏ । ଏହି ସଂକ୍ରମଣ, ଗର୍ଭାଶୟ, ଫାଲୋପିଆନ ନଳୀ ଏବଂ ଡ଼ିମ୍ବାଶୟକୁ ବ୍ୟାପିଥାଏ । ବେଳେବେଳେ ଏହା ଜୀବନ ମରଣ ସମସ୍ୟାରେ ପକାଇଥାଏ । ଏଥିପାଇଁ ବନ୍ଧ୍ୟା ଦୋଷ ମଧ୍ୟ ଦେଖାଯାଇଥାଏ । ଡ଼ାଲକନ୍‌ସିଲ୍‌ଡ଼ ଆଇ.ୟୁ.ଡ଼ି. ବ୍ୟବହାର କରିବା ଦ୍ୱାରା ଏହି ସମସ୍ୟାଟି ଦେଖାଗଲା । ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି ତାହାହେଲା, ଡ଼ାଲକନ୍ ସିଲ୍‌ଡ଼ର କୁ ପ୍ରଭାବ ୧୯୭୨ ମସିହା ସୁଧା ଜଣା ପଡ଼ିଥିଲେ ସୁଦ୍ଧା ତା'ପରେ ତିନିବର୍ଷରୁ ଉର୍ଦ୍ଧ ସମୟ ଧରି ଏହାର ବ୍ୟବହାର ଚାଲିଥିଲା । ଏଥିପାଇଁ ରବିନ୍‌ସ କଂପାନୀ (ଯିଏ ଏହି ସିଲ୍‌ଡ଼ ପ୍ରସ୍ତୁତ କରିଥିଲେ) ଏହା ଦ୍ୱାରା ଆକ୍ରାନ୍ତ ହୋଇଥିବା ଲୋକମାନଙ୍କୁ ଏକ ନିୟୁତ ଡ଼ଲାର ମୂଦ୍ରା କ୍ଷତି ପୂରଣ ଭାବେ ଦେଇଥିଲେ ।

କୌଣସି ଉଚ୍ଚଧରଣର ପରୀକ୍ଷା ନିରୀକ୍ଷା କରାନଯାଇ ଡ଼ାଲକନ୍ ସିଲଡ଼କୁ ଜନ୍ମନିରୋଧ ପାଇଁ ବିକାଶଶୀଳ ରାଷ୍ଟ୍ରକୁ ଛାଡ଼ିଦିଆଗଲା । ଭାରତ ଭଳି ଦେଶ ଯେଉଁଠାରେ ଔଷଧ ନିୟନ୍ତ୍ରଣ ବ୍ୟବସ୍ଥା ବହୁତ ଦୁର୍ବଳ ସେଭଳି ଦେଶ ମାନଙ୍କରେ ଡ଼ାଲକନ୍ ସିଲଡ୍ ଭୟଙ୍କର କ୍ଷତି ଘଟାଇଛି । ୧୯୭୨ ମସିହାରେ ରବର୍ଟ ଡ଼୍ନୁ ନିକ୍‌ଲେସ ଭାରତରେ ଥିବା ୟୁ.ଏସ୍.ଏ.ଆଇ.ଡ଼ିର ଜନ ସଂଖ୍ୟା ଅଫିସକୁ ପରିବାର ନିୟନ୍ତ୍ରଣ ପାଇଁ ଡ଼ାଲକନ୍ ସିଲ୍‌ଡ଼ର ବ୍ୟବହାର ପାଇଁ ଉତ୍ସାହିତ କଲେ । ବିକାଶଶୀଳ ଦେଶଗୁଡ଼ିକରେ ପରିବାର ନିୟନ୍ତ୍ରଣ ଯୋଜନା କ୍ଲିନିକ୍ କରିବାକୁ ଚିଠି ଲେଖିଥିଲେ । ତୃତୀୟ ବିଶ୍ୱର ଲୋକମାନେ ସିଲଡ଼କୁ ଷ୍ଟେରିଲାଇଜ୍ କରି ବ୍ୟବହାର କରିବା ନିତ୍ୟାନ୍ତ ଦରକାର ଥିଲା, କିନ୍ତୁ ଏହି ସଲଡ଼ ୪୨ଟି ଦେଶରେ ବ୍ୟବହାର କରାଯାଇଥିଲା । ଭାଗ୍ୟବସତଃ ଭାରତ ଏହି ଦେଶ ମାନଙ୍କ ମଧ୍ୟରେ ନଥିଲା । କିନ୍ତୁ

ବ୍ୟବହାର କରାଯାଇଥିବା ୪୨ଟି ଦେଶପାଇଁ ରବିନ୍‌ସ ଉପଯୁକ୍ତ ନିର୍ଦ୍ଦେଶାବଳୀ ପଠାଇନଥିଲେ । କାରଣ ୧୦୦୦ ଟି ସିଲଡ଼ ପ୍ୟାକେଟ ପାଇଁ ମାତ୍ର ଗୋଟିଏ ନିର୍ଦ୍ଦେଶାବଳୀ ଥିଲା । ପୁଣି ଏହି ନିର୍ଦ୍ଦେଶାବଳୀ ମାତ୍ର ତିନୋଟି ଭାଷାରେ ଲେଖାଥିଲା । ଯଥା - ଇଂରାଜୀ, ଫରାସୀ ଓ ସ୍ପେନିସ୍ । ତେଣୁ ଅନ୍ୟ ଦେଶର ଲୋକମାନେ ଏହି ନିର୍ଦ୍ଦେଶାବଳୀ ବୁଝିନଥିଲେ ।

ଏଥିରୁ ବୁଝାପଡୁଛି ଉନ୍ନତଦେଶମାନେ ବିପଦପୂର୍ଣ୍ଣ କ୍ଷତିକାରକ ବୈଜ୍ଞାନିକ ପଦ୍ଧତି ଓ ଔଷଧକୁ ଆଣି ବିକାଶୋନ୍ମୁଖୀ ଦେଶ ଗୁଡ଼ିକରେ ଲଦି ଦେଉଛନ୍ତି । ସେମାନଙ୍କ ପାଇଁ ସତେ ଯେମିତି ବିକାଶୋନ୍ମୁଖୀ ଦେଶଗୁଡ଼ିକର ଲୋକମାନେ ଗୋଟିଏ (ଗିନିପିଗ୍ ଗିନିପିଗ୍ ହେଉଛି ଔଷଧ ପରୀକ୍ଷା କରିବା ପାଇଁ ବ୍ୟବହାର କରାଯାଉଥିବା ଘୁଷୁରି) ଏହି ପ୍ରସଙ୍ଗରେ ଏକଥା କହିବା ଠିକ୍ ହେବ ଯେ ଆନ୍ତର୍ଜାତିକ ଯୋଜନାବଦ୍ଧ ପରିବାର ମହାସଂଘ (ଇଣ୍ଟର ନ୍ୟାସନାଲ ପ୍ଲାନ୍ ଓ ପ୍ୟାରେଣ୍ଟ ହୁଡ୍ ଫେଡ଼େରସନ୍) ଯାହାକି ଜନ୍ମ ନିୟନ୍ତ୍ରଣ କ୍ଷେତ୍ରରେ ବିଶ୍ୱତମାମ ଏକ ବୃହତ୍ ସଂଗଠନ ରୂପେ କାର୍ଯ୍ୟ କରୁଛି । ଏହି ସଂଗଠନ ମଧ୍ୟ ଆମେରିକାର ବିଭିନ୍ନ ଅନୁଷ୍ଠାନ ଯଥା ରକ୍‌ଫେଲର ଫାଉଣ୍ଡେସନ ଫୋର୍ଡ଼ ଫାଉଣ୍ଡସନ ଏବଂ ବିଶ୍ୱବ୍ୟାଙ୍କ ଠାରୁ ପାଣ୍ଠି ପାଉଛି ।ଆନ୍ତର୍ଜାତିକ ପରିବାର ମହାସଂଘରେ ସଭ୍ୟ ମଧ୍ୟ ଡ୍ୟୁପରେଟ କେମିକାଲସ, ଆମେରିକାର ସୁଗାର କର୍ପୋରେସନ୍, ଜେନରାଲ ମଟରସ୍, ଚେଜ୍ ମାନହଟନ୍ ବ୍ୟାଙ୍କ୍, ଇଣ୍ଟରନ୍ୟାସନାଲ ନିକେଲ, ଜେରକ୍ସ ଓ ଗଲଫ ଅଂଶ ଭଳି ସଂସ୍ଥାର ପ୍ରତିନିଧି ରହିଛନ୍ତି ।ଆମେ କଣ ବିଶ୍ୱାସ କରିବା ଯେ ଏହିସବୁ ସଂଗଠନ ବଦାନ୍ୟ ମନୋବୃତ୍ତି ନେଇ ପାଣ୍ଠି ସାହାଯ୍ୟ ଦେଉଛନ୍ତି ?

**ଗର୍ଭନିରୋଧ ପାଇଁ ଅସ୍ତ୍ରୋପଚାର :**

ଏ ପର୍ଯ୍ୟନ୍ତ ଆମେ ଗର୍ଭନିରୋଧକୁ ପରିହାର କରିବା ସଂବଧରେ ଆଲୋଚନା କରି ଆସିଛେ, ଅର୍ଥାତ୍ ଜଣେ ଯଦି ଶିଶୁ ପାଇଁ ଇଚ୍ଛା କରିବେ ଏହିସବୁ ଗର୍ଭନିରୋଧକ ଉପାୟକୁ ବନ୍ଦ କରିଦେଇପାରିବେ । ସାଧାରଣତଃ ଦେଖାଯାଇଛି ଯେ ଭାରତରେ ଗର୍ଭନିରୋଧ ପାଇଁ ଯେତେ ପ୍ରଚାର, ପ୍ରୋତ୍ସାହନ ଦିଆଯାଉଛି ତାହାର ଉଦ୍ଦେଶ୍ୟ ଗର୍ଭଧାରଣକୁ ସଂପୂର୍ଣ୍ଣଭାବେ ପରିହାର କରିବା ।

ପୁରୁଷ ଅସ୍ତ୍ରୋପଚାର ଓ ସ୍ତ୍ରୀ ଅସ୍ତ୍ରୋପଚାର ଉପରେ ଆମେ ପ୍ରାୟତଃ ଗୁରୁତ୍ବ ଦେଇ ଆସିଛେ । କିନ୍ତୁ ଏ ଦିଗରେ ଯେତେ ସବୁ କାର୍ଯ୍ୟ ହେଉଛି ତାହା ଏକ ପାଖିଆ ହୋଇ ଆସିଛି । ଦେଶରେ ଯେତେ ସଂଖ୍ୟାରେ ସ୍ତ୍ରୀ ଅସ୍ତ୍ରୋପଚାର (ଟ୍ୟୁବେକ୍ଟୋମି)

କରାଯାଉଛି ପୁରୁଷ ଅସ୍ତ୍ରୋପଚାର ତା ତୁଳନାରେ ବହୁତ୍ କମ୍ । ପୁରୁଷ ଅସ୍ତ୍ରୋପଚାର ସରଳ ଓ ସହଜ କଥା ଜାଣି ସୁଦ୍ଧା ସ୍ତ୍ରୀ ଅସ୍ତ୍ରୋପଚାର ଉପରେ ଗୁରୁତ୍ୱ ଦିଆଯାଇଛି । ଦେଶରେ ଜରୁରୀ ପରିସ୍ଥିତି ଜାରିଥିବା ବେଳେ ଜୋର ଜବରଦସ୍ତ ପୁରୁଷମାନଙ୍କୁ ଅସ୍ତ୍ରୋପଚାର କରାଯିବା ଫଳରେ ଯେଉଁ ନକାରାତ୍ମକ ପରିସ୍ଥିତି ସୃଷ୍ଟି ହୋଇଥିଲା ସେହି କାରଣରୁ ପୁରୁଷ ଅସ୍ତ୍ରୋପଚାର ପ୍ରତି ସମସ୍ତେ ବିମୁଖ ହେଉଛନ୍ତି । ତେବେ, କଥାଟି ଏତିକିରେ ଶେଷ ହୋଇଯାଇନାହିଁ । ଏକଥା ସ୍ପଷ୍ଟ ଜଣାପଡୁଛି ଯେ ଯେଉଁମାନେ ସ୍ୱାସ୍ଥ୍ୟ ଯୋଜନା କରୁଛନ୍ତି ସେମାନେ ମହିଳା ମାନଙ୍କୁ ହିଁ ଗର୍ଭନିରୋଧ ପାଇଁ ଲକ୍ଷ୍ୟ ରଖୁଛନ୍ତି କାରଣ ସ୍ତ୍ରୀ ଅସ୍ତ୍ରୋପଚାରର ପରିସଂଖ୍ୟାନକୁ ବଢ଼େଇ ହେବ ଏବଂ ସ୍ୱଭାବଗତ ଭାବେ ମହିଳା ମାନେ ଏହାକୁ ପ୍ରତିରୋଧ କରନ୍ତି ନାହିଁ । ଯାହା ଫଳରେ କି, ଦେଶ ସାରା ସ୍ତ୍ରୀ ଅସ୍ତ୍ରୋପଚାର ଉପରେ ଗୁରୁତ୍ୱ ଦିଆଯାଇଛି । କିନ୍ତୁ ଏହି ସବୁ ଅସ୍ତ୍ରୋପଚାର ପାଇଁ କରାଯାଉଥିବା କ୍ୟାମ୍ପ ମାନଙ୍କରେ ଉପଯୁକ୍ତ ବନ୍ଦୋବସ୍ତ ହୋଇନଥାଏ ଏବଂ ସ୍ୱାସ୍ଥ୍ୟଗତ ସୁରକ୍ଷାମାନ ଗ୍ରହଣ କରାଯାଇ ନଥାଏ ।

**ଗର୍ଭନିରୋଧ ଇଞ୍ଜେକ୍ସନ୍ :**

ଏବେ ଦେଖାଯାଇଛି ଗବେଷକମାନେ ଗର୍ଭନିରୋଧକ ଇଞ୍ଜେକ୍ସନ ଉପରେ ଗୁରୁତ୍ୱ ଦେଉଛନ୍ତି । ହର୍ମୋନ ଗର୍ଭନିରୋଧକ ଇଞ୍ଜେକସନ୍ ଅଧିକ ନିରାପଦ ହୋଇଥିବାରୁ ଏହି ବିକଳ୍ପଟି ବର୍ତ୍ତମାନ ପ୍ରୋତ୍ସାହନ ଲାଭ କରିଛି । ନିକଟ ଭବିଷ୍ୟତରେ ଏଚ.ସି.ଜି. ପ୍ରତିରୋଧ (ଆଣ୍ଟି ଏଚ୍.ସି.ଜି) ଇଞ୍ଜେକସନ୍ ବଜାରକୁ ଆସିଯିବାର ସଂଭାବନା ରହିଛି । ଏହି ଇଞ୍ଜେକସନ୍ ଦିଆଯିବାପରେ ଜଣେ ସ୍ତ୍ରୀ ଲୋକ ଦେହରେ କ୍ରିଓନିକ୍ ଗନାଡ଼ୋଟ୍ରୋଫିନ ନାମକ ହର୍ମୋନର ପ୍ରତିରୋଧକ ଶକ୍ତି ତିଆରି ହୁଏ । ଗର୍ଭ ବୃଦ୍ଧିପାଇଁ ଏହି ହର୍ମୋନର ଆବଶ୍ୟକତା ରହିଥାଏ । ଆଣ୍ଟି ଏଚ.ସି.ଜି. ଇଞ୍ଜେକ୍ସନ ଦିଆ ଯିବା ଫଳରେ ଗର୍ଭଧାରଣକୁ ଏହା ରୋକିଦିଏ । ଅବଶ୍ୟ ଏହି ଭଳି ଇଞ୍ଜେକ୍ସନର ନୈତିକତା ଏବଂ କେତେଦୂର ଏହା ସଫଳ ହୋଇପାରିବ ସେ ନେଇ ସନ୍ଦେହ ପ୍ରକାଶ ପାଉଛି । କିନ୍ତୁ ଏ ଦିଗରେ କାମ ଜୋରସୋର ଆଗେଇଛି ।

**ଗର୍ଭବତୀ ନାରୀଙ୍କ ଉପରେ ପ୍ରଭାବ :**

ପୂର୍ବ ପୃଷ୍ଠାମାନଙ୍କରେ ଗର୍ଭନରୋଧ କ୍ଷେତ୍ରରେ ଯେଉଁ ସବୁ ଗବେଷଣା ଚାଲିଛି ଏବଂ ଏହାର ଫଳାଫଳ ସମ୍ବନ୍ଧରେ ବିଶଦ ଆଲୋଚନା କରାଯାଇଛି । ନୂଆ

ନୂଆ ଗବେଷଣାର ତାଲିକା ଏତିକିରେ ଶେଷ ହୋଇଯାଇନାହିଁ । ଗର୍ଭନିରୋଧ ପାଇଁ କି କି ଉପାୟମାନ ଚିନ୍ତା କରାଯାଉଛି ଓ ସେଗୁଡ଼ିକୁ କିଭଳି ପ୍ରୋତ୍ସାହନ ଦିଆଯାଉଛି ତଥା- ସାଧାରଣ ସ୍ୱାସ୍ଥ୍ୟ ସହିତ ଏହାର କି ସମ୍ପର୍କ ରହିଛି ତାହାର ଏକ ଅବତାରଣା ଏଠି କରାଗଲା ।

ଷାଠିଏ ଦଶକରେ ଯେତେବେଳେ ଗର୍ଭନିରୋଧ ବ୍ୟବସ୍ଥା ମାନ ବ୍ୟପକ ଭାବରେ ଗ୍ରହଣ କରାଗଲା, ମହିଳା ସଂଗଠନମାନେ ଏହାକୁ ଏକ ସଠିକ୍ ପଦକ୍ଷେପ ଭାବେ ଗ୍ରହଣ କରିଥିଲେ । ମହିଳା ସଂଗଠନମାନେ ବିଶ୍ୱାସ କରୁଥିଲେ ଯେ ଗର୍ଭନିରୋଧ ନିଶ୍ଚିତ ଭାବରେ ମହିଳାମାନଙ୍କୁ ସେମାନଙ୍କ ଶରୀର ଉପରେ ଉପଯୁକ୍ତ ନିୟନ୍ତ୍ରଣ ରଖିବା ଦିଗରେ ସାହାଯ୍ୟ କରିବ । ଅନ୍ୟ ଅର୍ଥରେ ନାରୀକୁ ଶକ୍ତି ଯୋଗାଇବାରେ ଏହା ସହାୟକ ହେବ । ଏକଥା କହିବାରେ ତିଳେ ବି କୁଣ୍ଠା ନାହିଁ ଯେ ଗର୍ଭନିରୋଧ ପାଇଁ ଯେତେକ ଉପାୟ ବାହାରୁଛି ସେଗୁଡ଼ିକ ବିପଦ ମୁକ୍ତ ନହେଲେ ହେଁ ଅନାବଶ୍ୟକ ନୁହେଁ ଏବଂ ବହୁସଂଖ୍ୟକ ଗର୍ଭଧାରଣ ଅପେକ୍ଷା ଏହା ନିଶ୍ଚିତ ଭାବରେ ଭଲ । କିନ୍ତୁ ପ୍ରଶ୍ନ ହେଉଛି ଏହି ସବୁ ଉପାୟମାନ ମହିଳାମାନଙ୍କୁ ପ୍ରଜନନ ପ୍ରକ୍ରିୟାରେ ନିୟନ୍ତ୍ରଣ କରିବାରେ କେତେଦୂର ସାହାଯ୍ୟ କରିଛି ?

ଭାରତରେ ଏକଥା ନିଃସନ୍ଦେହରେ କୁହାଯାଇପାରେ ଯେ, ନିୟନ୍ତ୍ରଣ କଥାଟି ଆଦୌସଂଭବ ହୋଇନାହିଁ । କି ପ୍ରକାର ଗର୍ଭନିରୋଧକ ବ୍ୟବସ୍ଥା ଗ୍ରହଣ କରିବେ ସେ ସମ୍ବନ୍ଧରେ ଏ ଦେଶର ନାରୀମାନଙ୍କ ଠାରେ ଯଥେଷ୍ଟ ସୂଚନାର ଅଭାବ ରହିଛି । ଏହାର କାରଣ ହେଉଛି ଯେତେବେଳେ ଜନ୍ମ ନିୟନ୍ତ୍ରଣ ସଂପର୍କୀୟନିତୀମାନ ପ୍ରୟୋଗ କରାଯାଇଛି ତାହା ସବୁବେଳେ ଏ କ୍ଷେତ୍ରରେ କାର୍ଯ୍ୟରତ ଯୋଜନାକାରୀ ମାନଙ୍କର ହାମବଡ଼ା ମନୋବୃତ୍ତିର ଫଳ । ଯିଏ ଯେତେବେଳେ ଯେମିତି ଗ୍ରହିଁଲେ, ତାହା ସେ କରୁଛି । ଜନ୍ମ ନିୟନ୍ତ୍ରଣ ପାଇଁ କି କି ପ୍ରକାର ଉପାୟ ରହିଛି ସେ ସମ୍ବନ୍ଧରେ ଆବଶ୍ୟକ ସୂଚନା କେଉଁଠି ଦିଆଯାଇ ନାହିଁ । ଅନେକ ଜନ୍ମ ନିୟନ୍ତ୍ରଣ କାର୍ଯ୍ୟକ୍ରମ ଗୁପ୍ତ ଭାବରେ କରାଯାଉଛି ଯାହାଫଳରେ ଏହି ସବୁ କାର୍ଯ୍ୟକ୍ରମର ଅସଲ ଉଦ୍ଦେଶ୍ୟ ଉପରେ ସନ୍ଦେହ ପ୍ରକାଶ ପାଇବା ସ୍ୱାଭାବିକ୍ ।

ଆହୁରି ମଧ୍ୟ, ଅଧିକାଂଶ ଗର୍ଭନିରୋଧବ୍ୟବସ୍ଥା ଏପରି ଜଟିଳ ହେଉଛି ଯାହାଦ୍ୱାରା ସ୍ୱାସ୍ଥ୍ୟ କ୍ଷେତ୍ରରେ କାର୍ଯ୍ୟରତ କର୍ମଗ୍ୱରୀ ଡ଼ାକ୍ତର ଓ ସାଧାରଣ ସ୍ୱାସ୍ଥ୍ୟ ବ୍ୟବସ୍ଥା ଉପରେ ମହିଳାମାନଙ୍କୁ ନିର୍ଭର କରିବାକୁ ପଡୁଛି । ଉଦାହରଣସ୍ୱରୂପ ଗର୍ଭ ଭିତରେ ରଖାଯାଉଥିବା ଯନ୍ତ୍ରକୁ ବାହାର କରିବା ପାଇଁ ସ୍ୱାସ୍ଥ୍ୟ କର୍ମଗ୍ୱରୀମାନଙ୍କ ସାହାଯ୍ୟ ନେବାକୁ ହିଁ ହେବ । ଏହିଭଳି ପଦ୍ଧତିରେ ଗୋଟିଏ ଅସୁବିଧା ହେଉଛି ଯେ ଏଗୁଡ଼ିକର ସଦୁପଯୋଗ କରିବା ପାଇଁ ଅନେକ ଅସୁବିଧା ରହିଛି । ଯେଉଁମାନେ

ଗର୍ଭନିରୋଧକ ଉପାୟମାନ ଯୋଗାଉଥିନ୍ତି ସେମାନେ ମହିଳାମାନଙ୍କୁ କେଉଁ ଉପାୟଟି ଗ୍ରହଣ କରିବାକୁ ହେବ, ସେ ସମ୍ବନ୍ଧରେ ବାଛିବାର ସୁଯୋଗ ଦେଇ ନଥାନ୍ତି । ବରଂ ଜୋର ଜବରଦସ୍ତ ଜନ୍ମ ନିୟନ୍ତ୍ରଣ ପାଇଁ ସ୍ୱାସ୍ଥ୍ୟ କର୍ମଚାରୀମାନେ ଆଗେଇ ଆସନ୍ତି । ଟ୍ୟୁବେକୋଟାମି (ସ୍ତ୍ରୀ ଅସ୍ତ୍ରୋପଚାର) ଭଳି ବିପଦପୂର୍ଣ୍ଣ ଗର୍ଭନିରୋଧକ ଉପାୟ କ୍ଷେତ୍ରରେ ବାଧ୍ୟ ବାଧକତା କରାଯାଉଥିବା ବେଳେ ନିରାପଦ ପୂର୍ଣ୍ଣ ବ୍ୟବସ୍ଥା କରାଯାଉନାହିଁ ।

ଭାସେକ୍ଟୋମି ( ପୁରୁଷ ଅସ୍ତ୍ରୋପଚାର) ପ୍ରତି ଗୁରୁତ୍ୱ ଦିଆଯାଇ ନାହିଁ । ବୋଧହୁଏ ସ୍ୱାସ୍ଥ୍ୟ ନୀତିର ପ୍ରଣୟନ ବେଳେ ଜନ୍ମ ନିୟନ୍ତ୍ରଣ ଉପାୟ ସମ୍ବନ୍ଧରେ ମହିଳା ସଂଗଠନମାନେ ଆହୁରି ତୀକ୍ଷ୍ଣ ଦୃଷ୍ଟି ଦେବା ଉଚିତ୍ । ବିଶେଷକରି ଏକ ତରଫା ଭାବରେ ଯେହେତୁ ଗର୍ଭନିରୋଧକ ଉପାୟମାନ ଚିନ୍ତା କରାଯାଉଛି ମହିଳା ସଂଗଠନ ମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଆଲୋଚନା ପ୍ରସଙ୍ଗରେ ଆଉ ଏକ ବିଷୟ ଏଠାରେ ଉତ୍‌ଥାପନ କରାଯିବା ଆବଶ୍ୟକ । ଗର୍ଭନିରୋଧକ ଉପାୟର ସଫଳତା ସମ୍ବନ୍ଧରେ ଯଦିଓ ଆଲୋଚନା ହୋଇଛି ତଥାପି ଏଭଳି ଅନେକ ଉପାୟ ରହିଛି ଯାହାକି ନାରୀମାନଙ୍କର ସ୍ୱାସ୍ଥ୍ୟ, ସେମାନଙ୍କର ଅଧିକାର ଏବଂ ସମାଜରେ ନାରୀର ସ୍ଥାନ ଏସବୁ ବିଷୟରେ ବହୁ ଗୁରୁତ୍ୱପୂର୍ଣ୍ଣ ଏବଂ ବିବାଦୀୟ ପ୍ରଶ୍ନମାନ ଉତ୍‌ଥାପନ କରୁଛି । ନିକଟ ଅତୀତର ଏହିଭଳି ଦୁଇଟି ଉଦାହରଣ ଦିଆଯାଇପାରେ: ଇ.ପି. ଫୋର୍ଟ ଔଷଧର ବିକ୍ରି ଏବଂ ଆମ୍‌ନିଓ ସେଣ୍ଟେସିସ୍ ବା ଲିଙ୍ଗନିରୂପଣ ସମ୍ବନ୍ଧୀୟ ଉପାୟର ବହୁଳ ବ୍ୟବହାର । ପ୍ରଥମଟି ହେଉଛି କିଛି ହର୍ମୋନ ସମ୍ବନ୍ଧୀୟ ଔଷଧର ବିକ୍ରି ଯାହାକି ଗର୍ଭରେ ଥିବା ଭ୍ରୁଣ ଓ ସ୍ତ୍ରୀମାନଙ୍କ ସ୍ୱାସ୍ଥ୍ୟ ଉପରେ ଅତ୍ୟନ୍ତ ଖରାପ ପ୍ରଭାବ ପକାଇବ ଯାହାର କି କୌଣସି ରୋଗନାଶକ ଶକ୍ତି ନାହିଁ । ଦ୍ୱୀତୀୟ ଘଟଣାରେ ଆମନିଓ ସିଣ୍ଟେସିସ ପଦ୍ଧତି ଦ୍ୱାରା ଗର୍ଭାଶୟ ଭ୍ରୁଣକୁ ହତ୍ୟା କରାଯାଇଥାଏ । ଏହି ଦୁଇଟିଯାକ ପଦ୍ଧତିକୁ ଡ଼ାକ୍ତର ଓ ଡ଼ାକ୍ତରୀଅନୁଷ୍ଠାନମାନେ ସମର୍ଥନ ଦେଇଥିଲେ । ଏହି ଦୁଇଟି ଉଦାହରଣରୁ ଜଣାପଡୁଛି ଯେ ଜନ୍ମ ନିୟନ୍ତ୍ରଣ ସମ୍ବନ୍ଧୀୟ ଉପାୟଗୁଡ଼ିକ ସାଧାରଣତଃ କ୍ଷତିକାରକ । ବିଶେଷକରି ମହିଳାମାନେ ଏହା ଦ୍ୱାରା ଶୋଷିତ ହୋଇଥାନ୍ତି ।

ଏହିଭଳି ଏକ ଦୃଷ୍ଟି କୋଣ ଅତି ସାଧାସିଧା ମନେ ହେବା ସ୍ୱାଭାବିକ୍ । କାରଣ ଯେଉଁ ଅର୍ଥରେ ଜନ୍ମନିୟନ୍ତ୍ରଣ ଉପାୟ କଥା ଆଜି ଆଲୋଚନା କରାଯାଉଛି ତାହାର ଉଦ୍ଦେଶ୍ୟ ଓ ମର୍ମ ଭିନ୍ନ । ଗର୍ଭନିରୋଧ ପଦ୍ଧତି ପରିପ୍ରେକ୍ଷୀରେ ଆମେରିକା ଓ ଆଫ୍ରିକାର ମହିଳା ମାନେ ମଧ୍ୟ ଏହି ଭଳି ସମସ୍ୟାର ସମ୍ମୁଖୀନ ହୋଇଥିଲେ ।

ପୃଥିବୀ ସାରା ବିଶେଷ କରି ଭାରତ ଭଳି ତୃତୀୟ ବିଶ୍ୱର ଦେଶମାନଙ୍କ କ୍ଷେତ୍ରରେ ଏଭଳି ଏକ ଦ୍ୱନ୍ଦ ଦେଖାଦେବା ସ୍ୱାଭାବିକ । ଏକଥା ଆମର ବୁଝି ରଖିବା ଉଚିତ୍ ଯେ କେତେକ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ବିଭିନ୍ନ ପଦ୍ଧତିକୁ ଉଦ୍‌ଭାବନ କରୁଛନ୍ତି ଏବଂ ସେମାନେ ନିଶ୍ଚିତରେ ଏହିସବୁ ପଦ୍ଧତି ବା ଉପାୟକୁ ପ୍ରୋତ୍ସାହିତ କରିବା ପାଇଁ ଉଦ୍ୟମ କରିବେ । ଏହିଭଳି ବିଶ୍ୱତମାମ ପାଶ୍ଚାତ୍ୟ ରାଷ୍ଟ୍ରମାନେ ନିଜ ସ୍ୱାର୍ଥପାଇଁ ଅନେକ ପ୍ରକାର ପଦ୍ଧତିକୁ ବ୍ୟବହାର କରୁଛନ୍ତି । ଶୋଷଣ ଏବଂ ଲାଳସାର ମନୋବୃତ୍ତି ହିଁ ଏହି ସବୁ ପଦ୍ଧତିର ବ୍ୟବହାରକୁ ନିର୍ଦ୍ଧାରିତ କରିଥାଏ । ଯେଉଁମାନେ ଦରିଦ୍ର ଓ ନିସ୍ୱଃ ସେହିମାନେ ହିଁ ଏହି ଶୋଷଣର ଶିକାର ହୋଇଥାନ୍ତି ।

***ପ୍ରକାଶକ*** -
ହମାରା ଦେଶ ପ୍ରୋଗ୍ରାମ୍ କମିଟି, ଓଡ଼ିଶା
ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର - ୭୫୧ ୦୦୩

***Printed at*** -
SRI GURU GOURANGA PRESS
Nayapalli, Bhubaneswar - 751 012
Phone - 55517

Contribution Price - **Rs. 2/-**

# ଆମ ଜୀବନ

ପ୍ରଥମ ଖଣ୍ଡ



## ଆଲୋଚନା ମାଳା

ପ୍ରସ୍ତୁତି—


ସର୍ବଭାରତୀୟ ଜନବିଜ୍ଞାନ ସଂଗଠନ

ଭାରତ ଜ୍ଞାନବିଜ୍ଞାନ ସମିତି, ଓଡ଼ିଶା

ଏ/୧୨, ( H I G ) ବରମୁଣ୍ଡା ହାଉସିଂବୋର୍ଡ କଲୋନୀ,

ଭୁବନେଶ୍ୱର—୭୫୧୦୦୩

# ଆମ ଜୀବନ

ଜଣେ ଭାରତୀୟର ଜୀବନ ଆଜି ଦୁଃଖ ଓ ଯନ୍ତ୍ରଣାରେ ପରିପୂର୍ଣ୍ଣ । ବଞ୍ଚି ରହିବାପାଇଁ ପ୍ରତ୍ୟେକ ମୁହୂର୍ତ୍ତରେ ସେ ଅହରହ ସଂଗ୍ରାମ କରିଚାଲିଛି । କେତେ-ଗୁଡ଼ିଏ ଧନୀକ ଶ୍ରେଣୀର ଲୋକମାନଙ୍କୁ ଛାଡ଼ି ବାକି ସମସ୍ତେ ଦୁଇ ଓଳି ଖାଦ୍ୟ ପାଇଁ ଏକ କ୍ରୀତଦାସ ଭଳି ସଂଗ୍ରାମ କରି ଚାଲିଛନ୍ତି । ମଣିଷର ତିନୋଟି ଅତ୍ୟାବଶ୍ୟକ ଜିନିଷ ହେଲା ଖାଦ୍ୟ, ବସ୍ତ୍ର, ବାସଗୃହ । ଗୃହ ଓ ବସ୍ତ୍ର ଦୂରର କଥା, ଗୋଟିଏ ଓଳି ଖାଦ୍ୟ ମଧ୍ୟ ଏକ ସାଧାରଣ ବ୍ୟକ୍ତିପାଇଁ ପାଇବା କଷ୍ଟକର ହୋଇ ପଡ଼ିଛି । ସରକାର ଯେତେଗୁଡ଼ିଏ ଉନ୍ନତି ମୂଳକ ଯୋଜନା ସୃଷ୍ଟି କରିଛନ୍ତି, ସେ ଯୋଜନାର ଫଳ ବିଶେଷତଃ ଉଚ୍ଚ ମଧ୍ୟବିତ୍ତ ଓ ଧନୀକ ଶ୍ରେଣୀର ଲୋକମାନେ ହାସଲ କରି-ଛନ୍ତି । ଏବେମଧ୍ୟ ଭାରତରେ ଶତକଡ଼ା ୪୪ ଭାଗ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି । ସେମାନଙ୍କର ବାର୍ଷିକ ଆୟ ମାତ୍ର ୬୪୦୦ ଟଙ୍କା । ଅନେକଙ୍କର ବାର୍ଷିକ ଆୟ ୬୪୦୦ ଟଙ୍କାରୁ ମଧ୍ୟ କମ୍ । ଏହି ଗରୀବ ଶ୍ରେଣୀର ଲୋକମାନେ ଯେଉଁଭଳି ଭାବରେ ସେମାନଙ୍କର ଜନ୍ମଗତ ଅଧିକାରରୁ ବଞ୍ଚିତ ହୋଇ ଜୀବନ ବିତାଉଛନ୍ତି, ତାହା ଅତି ଦୁଃଖ ଓ ପରିତାପର ବିଷୟ ।

ଭାରତ ବର୍ଷର ଜଣେ ସାଧାରଣ ନାଗରିକ ଯେତେବେଳେ ନିଜର ସର୍ବନିମ୍ନ ଆବଶ୍ୟକତା ଗୁଡ଼ିକ ପାଉନାହିଁ, ସେତେବେଳେ ତା' ପାଖରେ ସାଧାରଣ ସ୍ୱାସ୍ଥ୍ୟ ଓ ଶିକ୍ଷାର ମୂଲ୍ୟ କଣ ?

* ଆମେରିକାଣି ରଖିବା ଉଚିତ ଶତକଡ଼ା ୯୦ ଭାଗ ଲୋକଙ୍କପାଇଁ ସ୍ୱାସ୍ଥ୍ୟ-କର ପରିବେଶର ସୁବିଧା ନାହିଁ ।
* ଆମ ଦେଶର ଶତକଡ଼ା ୭୦ ଭାଗ ମହିଳା ନିରକ୍ଷର ।
* ଶତକଡ଼ା ୪୫ ଭାଗଲୋକଙ୍କପାଇଁ ପାନୀୟ ଜଳର ଅଭାବ
* ସମଗ୍ର ବିଶ୍ୱସ୍ଥିତି ଅନୁସାରେ ସମୁଦାୟ ନିରକ୍ଷର ଲୋକଙ୍କ ଭିତରୁ ୪୦% ଭାରତରେ ଥାଆନ୍ତି ।
* ୨୦% ଲୋକଙ୍କପାଇଁ ପାନୀୟ ଜଳ ନାହିଁ ।
* ୩୦% ଲୋକ ଅସ୍ୱାସ୍ଥ୍ୟକର ପରିବେଶରେ ରହନ୍ତି ।

ସ୍ୱାଧୀନତାପରେ ଭାରତର ପ୍ରଗତି ଧୀର ମନ୍ଥର ଗତିରେ ଆଗେଇ ଚାଲିଛି । ଯଦି ଏହିପରି ଭାବରେ ଚାଲେ ତେବେ ଆଗାମୀ ୩୦ ବର୍ଷ ମଧ୍ୟରେ ପୃଥିବୀର ୭୦% ନିରକ୍ଷର ଭାରତୀୟ ହୋଇଯିବେ ବୋଲି ଅନୁମାନ କରାଯାଉଛି । ପୁଣି ଏହି ଲୋକମାନଙ୍କ ପାଇଁ ସ୍ୱଚ୍ଛ ନିର୍ମଳ ପାନୀୟ ଜଳ କିମ୍ବା ସାଧାରଣ ସ୍ୱାସ୍ଥ୍ୟକର ପରିବେଶର ମିଳି ନ ଥାଏ । ଭାରତରେ ଗରିବ ବ୍ୟକ୍ତିମାନେ ଯେଉଁଭଳି ଭାବେ ନିର୍ଯ୍ୟାତିତ ଓ ଲାଞ୍ଛିତ ଜୀବନ ଯାପନ କରୁଛନ୍ତି ତାହା ଭାଷାରେ କହିହେବନି । ସ୍ୱାଧିନତାର ୪୦ ବର୍ଷ ବିତିଯାଇଥିଲେ ମଧ୍ୟ ଗରିବ ମାନଙ୍କ ଅବସ୍ଥା ଆହୁରି ଶୋଚନୀୟ ହୋଇପଡ଼ିଛି । ଯେତେ ସରକାର ଶାସନ ଗାଦିକୁ ଆସିଛନ୍ତି, ସେମାନଙ୍କ ପ୍ରତିଶ୍ରୁତି ଏକ ବାହାସ୍ଫୋଟରେ ପରିଣତ ହୋଇଛି ।

## ୧. ନୂଆ ଅର୍ଥନୀତି : ଦାବୀ ଓ ବିରୋଧ

ଏବେ ଦିଲ୍ଲୀର ଶାସନ କର୍ତ୍ତାମାନେ ଏକ ନୂତନ ପ୍ରତିଶ୍ରୁତି ଦେଇ କହିଛନ୍ତି ଯେ ସେମାନେ ଦେଶରୁ ସଂପୂର୍ଣ୍ଣରୂପେ ଦାରିଦ୍ର୍ୟ ଦୂର କରିବେ । ସେଥିପାଇଁ ନୂତନ ଅର୍ଥ-ନୈତିକ ଯୋଜନାର ରୂପରେଖ ଜନସାଧାରଣଙ୍କ ସମ୍ମୁଖରେ ବାର-ମ୍ବାର ଗଣ ମାଧ୍ୟମ ଜରିଆରେ ଉପସ୍ଥାପନ କରାଯାଉଛି, କିନ୍ତୁ ବାସ୍ତବରେ ତାହା କେତେଦୂର ସଫଳ ହୋଇ ପାରିବ ବିଚାରର ବିଷୟ ।

ସରକାର ଦାବୀ କରନ୍ତି ଯେ ପ୍ରବାସୀ ଭାରତୀୟମାନେ ଏବେ ଭାରତର ଅର୍ଥନୈତିକ ପ୍ରଗତିରେ ଶତକଡ଼ା ୬୦ ଭାଗ ପୁଂଜି ବିନିଯୋଗ କରୁଛନ୍ତି । ସରକାର ମଧ୍ୟ ଦାବୀ କରିଛନ୍ତି ଯେ ତାହା ସମ୍ଭବ ହୋଇଛି କେବଳ କୋହଳ ଅର୍ଥନୈତିକ କଟକଣା ଯୋଗୁଁ । କିନ୍ତୁ ଦିଲ୍ଲୀ ଆସନରେ ଥିବ ଶାସନ କର୍ତ୍ତାମାନେ ଯେଉଁଭଳି ଭାବରେ ମିଥ୍ୟା ଆସ୍ଫାଳନ କରନ୍ତି ସରକାଙ୍କ ଏହି ଗଣନା କେତେଦୂର ଯଥାର୍ଥ ତାହା ବିଚାର କରିବାର କଥା ।

ଆର୍ଥିକ ସଂସ୍କାର କାର୍ଯ୍ୟକ୍ରମର ସମାଲୋଚକମାନେ କହନ୍ତି ଯେ ଯଦିଓ ଶିଳ୍ପ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି ପ୍ରାପ୍ତ ହୋଇ ଚାଲିଛି ତାକୁ କିଣିପାରିବା ଲୋକଙ୍କ ସଂଖ୍ୟା କ୍ରମଶଃ ହ୍ରାସ ହୋଇଚାଲିଛି । ତେଣୁ ସରକାର ଯେତେ ସଫେଇ ଦେଲେ ମଧ୍ୟ ଅର୍ଥନୈତିକ ପ୍ରଗତି ନିମ୍ନଗାମୀ ହେଉଛି । ଫଳରେ ଯେତିକି ବି ଉତ୍ପାଦାନ ପ୍ରସ୍ତୁତ ହୋଇ ବାହାରକୁ ଆସୁଛି ତାର ଦରଦାମ ବଢ଼ି ବଢ଼ି ଚାଲିଛି । ଏହାର ମୁଖ୍ୟ କାରଣ ଦୁଇଟି ହେଲା ।

* ଶିଳ୍ପ ପ୍ରଗତିର ହ୍ରାସ—ଯେଉଁ ଲୋକମାନଙ୍କର କ୍ରୟ କରିବାର ଶକ୍ତି ନାହିଁ ।

* ଯେଉଁ ମାନଙ୍କର କ୍ରୟ କରିବାର ଶକ୍ତି ଅଛି ସେମାନେ ନିହାତି ଚଢ଼ାଦରରେ ସେ ଉତ୍ପାଦାନ କିଣି ସାରିଲା ପରେ ଦ୍ୱିତୀୟଥର ପାଇଁ ଆଉ କିଣିବାକୁ ମନ କରୁ ନାହାନ୍ତି ।

ଆଉ କେତେକ ସମାଲୋଚକଙ୍କ ମତରେ ଶ୍ରମିକ ମାନଙ୍କର ଦରମା ହ୍ରାସ ସେମାନଙ୍କର ଦରମାରେ ସ୍ଥିରତା ଏବଂ ବାରମ୍ବାର ପରିବର୍ତ୍ତିତ ମହଙ୍ଗା ଭତ୍ତା ଏକ ସୁନେଲି ଭବିଷ୍ୟତର ସୂଚନା ଦିଏ ଅର୍ଥାତ୍ ଆଗାମୀ ଭବିଷ୍ୟତରେ ଏହି ଶ୍ରମିକ ମାନଙ୍କର ଭବିଷ୍ୟତ ନିଶ୍ଚିତ ଭବରେ ଉଜ୍ଜଳ । କିନ୍ତୁ ଗଭୀର ଭବେ ଏହାକୁ ବିଶ୍ଳେଷଣ କଲେ ଜଣାପଡ଼ିବ ଯେ ସରକାର ଯେତେଗୁଡ଼ିଏ ପଦକ୍ଷେପ ନେଇଛନ୍ତି ତାହା ଶ୍ରମିକ ବିରୋଧୀ । ସରକାର ଦାବୀକରି କହନ୍ତି ଯେ ଆଜିର ଶ୍ରମିକ ମାନଙ୍କୁ ଏହି ପଦକ୍ଷେପ ଗ୍ରହଣ କରିବାକୁ ପଡ଼ିବ । କାରଣ ଏହାଦ୍ୱାରା ସରକାରଙ୍କର ଅର୍ଥନୈତିକ ପ୍ରଗତି ଠିକ୍ ଭବରେ ସଂପାଦିତ ହୋଇପାରିବ । ଦେଶର ରପ୍ତାନୀ ବଢ଼ାଇବାକୁ ହେଲେ ଟଙ୍କାର ମୂଲ୍ୟହ୍ରାସ କରିବାକୁ ପଡିବ । ରପ୍ତାନୀ କ୍ଷେତ୍ରରେ ଭାରତୀୟ ମୁଦ୍ରାର ମୂଲ୍ୟ ହ୍ରାସ ହେଉଥିବାବେଳେ ଆମେ ଯେଉଁ ବସ୍ତୁ ବାହାରୁ କିଣୁ ତାହା ଚଢ଼ାଦରରେ କିଣି ଥାଉ । ମୁଦ୍ରାସ୍ଫିତିକୁ କମାଇବା ପାଇଁ ସାରା ଭାରତର ଲୋକମାନଙ୍କର କିଣିବା ଶକ୍ତିକୁ କୃତିମ ଉପାୟରେ ହ୍ରାସ କରଯାଉଛି । ଭବିଷ୍ୟତର ଲାଭ ପାଇଁ ଶ୍ରମିକ ମାନେ କିଛି ପରିମାଣରେ ନିଜର ବର୍ତ୍ତମାନ ସମୟରସ୍ୱାର୍ଥକୁ ତ୍ୟାଗ କରିବା ଉଚିତ୍ ।

ଅର୍ଥନୈତିକ ସଂସ୍କାର କାର୍ଯ୍ୟକ୍ରମର ସମାଲୋଚକମାନେ କହନ୍ତି ଯେତେବେଳେ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି କୌଣସି ଦେଶର ଅର୍ଥନୈତିକ ପ୍ରଗତିକୁ ପ୍ରଭବିତ କରିବାକୁ ଚାହେଁ ସେତେବେଳେ ଗରିବ ଲୋକମାନେ ହିଁ ଅଧିକ ବୋଝର ଶୀକାର ହୁଅନ୍ତି; କାରଣ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ସବୁବେଳେ ପୃଥିବୀର ଧନୀ ବ୍ୟକ୍ତିମାନଙ୍କ ଦ୍ୱାରା ପରଚାଳିତ ଏବଂ ଏମାନେ ଚାହାନ୍ତି ଯେ ସେମାନଙ୍କ ଉତ୍ପାଦିତ ପଦାର୍ଥଗୁଡ଼ିକ ସେମାନଙ୍କ ଦେଶ ବାହାରେ ଚଢ଼ା ଦରରେ ବିକ୍ରୀହେଉ । ସେତେବେଳେ ଗରୀବ ଦେଶର ଗରିବ ଲୋକମାନେ ଭୋକରେ ପ୍ରପୀଡ଼ିତ ହେଉଥିବାବେଳେ ଧନୀ ଦେଶର ସାଧାରଣ ବ୍ୟକ୍ତିମାନେ ବିଳାସପୂର୍ଣ୍ଣ ଜୀବନ ଯାପନ କରନ୍ତି ।

## ୨. ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମ : ମୂଳ କଥା

ବର୍ତ୍ତମାନ ଯେଉଁ ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମ ଭାରତରେ ଚାଲିଛି ତାହା ଭାରତ, ଲାଟିନ୍, ଆମେରିକାର ବ୍ୟକ୍ତି ବିଶେଷଙ୍କ ଉପରେ କଣ ପ୍ରଭାବ ପକାଇଲା ତାହା ପର୍ଯ୍ୟାଲୋଚନା କରିବା ପୂର୍ବରୁ ସେହି ଯୋଜନାର ମୂଳକଥା କ'ଣ ଥିଲା ତାହା ହିଁ ଆମ ଆଖି ଆଗରେ ରଖିବା ଉଚିତ୍ । ଅର୍ଥନୈତିକ ବ୍ୟବସ୍ଥାକୁ ଆଖି ଆଗରେ ରଖି ଏହି ସୁଧାର କାର୍ଯ୍ୟକ୍ରମ ଗୁଡିକର ରୂପରେଖ ତିଆରି କରିବା ଉଚିତ । ଯାହାକି ରପ୍ତାନୀ ଓ ଆମଦାନୀରେ ଭାରସାମ୍ୟ ରଖିପାରିବ ଏବଂ ଏହା ମଧ୍ୟ ଉନ୍ନତିରେ ସହାୟକ ହୋଇପାରିବ । ସାଧାରଣତଃ ସରକାରଙ୍କର ଅର୍ଥ-ନୈତିକ ସଂସ୍କାର କ୍ଷେତ୍ରରେ ଯେଉଁଗୁଡ଼ିକ ନିହାତି ଜରୁରୀ ତା ଉପରେ ହିଁ ଖର୍ଚ୍ଚ କାଟ ଆରମ୍ଭ ହୁଏ । ସେଗୁଡ଼ିକ ହେଲା ସାମାଜିକ ସେବା, ଅର୍ଥନୈତିକ ପରିବର୍ତ୍ତନ, ଗରିବ ଲୋକଙ୍କୁ ସବସିଡ୍ ନଦେବା ଓ ବ୍ୟାଙ୍କ ଋଣଦେବା ଉପରେ କଟକଣା । ସରକାରଙ୍କ ଖୋଲା ବାଣିଜ୍ୟନୀତିରେ ଆମଦାନୀ ଓ ରପ୍ତାନୀ ବୃଦ୍ଧିପାଏ । ରପ୍ତାନୀ ଯେଉଁ ପରିମାଣରେ ବୃଦ୍ଧି ପାଇବ ସେହି ପରିମାଣରେ ଆମଦାନୀ ବୃଦ୍ଧି ହେବା ସହିତ ବୈଦେଶିକ ମୁଦ୍ରା ମଧ୍ୟ ଦେଶରେ ବଢି ବଢି ଚାଲେ । ଏହି ଢାଞ୍ଚାଗତ ପରିବର୍ତ୍ତନ କାର୍ଯ୍ୟକ୍ରମର ଅନ୍ୟ ବିଷୟ ଗୁଡ଼ିକ ହେଲା ଉତ୍ପାଦନ ମୂଲ୍ୟରେ ବୃଦ୍ଧି, ମଜୁରୀରେ କାଟତି ଏବଂ ଶ୍ରମିକ ମାନଙ୍କର ରକ୍ଷଣାବେକ୍ଷଣର ଦାୟିତ୍ୱ ।

ସରକାରଙ୍କର ଏହି ବାଣିଜ୍ୟିକ ଖୋଲାଖୋଲି ନୀତି ଉପରେ ଜୋରଦେବାଟା ଏକ ଅଭିଶାପରେ ପରିଣତ ହୋଇଛି । ଭାରତର ଉତ୍ପାଦନ ବଢି ବଢି ଚାଲିଛି କିନ୍ତୁ ତାହା କିଣିବାକୁ କେହି ନାହାନ୍ତି ଅପର ପକ୍ଷରେ ବିଦେଶୀମାନଙ୍କୁ ସନ୍ତୁଷ୍ଟ କରିବା-ପାଇଁ ଆମେ ଚଢାଦରରେ ସେମାନଙ୍କର ବସ୍ତ୍ର କିଣୁଛୁ । ତେଣୁ ଏହି ଖୋଲାଖୋଲି ନୀତି ଯେ ସମ୍ପୂର୍ଣ୍ଣ ଭାବରେ ଅସଫଳ ତାହା ନିଃସନ୍ଦେହ ।

ଭାରତରେ ଏହିପ୍ରକାର ଯୋଜନା ଆରମ୍ଭ କରିଥିଲେ ଶ୍ରୀମତୀ ଇନ୍ଦିରା ଗାନ୍ଧି ୧୯୮୦ ମସିହାର ପ୍ରାରମ୍ଭରେ ଯେତେବେଳେ କି ପ୍ରଥମେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣ ଭାରତକୁ ଆସିଥିଲା । ସେହି ଯୋଜନା ଗୁଡ଼ିକୁ ବହୁଳ ଭାବରେ ରାଜୀବ ଗାନ୍ଧି ୧୯୮୫ ମସିହାରେ ଆଗେଇ ନେଇଯାଇଥିଲେ ।

## ୩. ଲାଟିନ୍ ଆମେରିକା ଓ ଆଫ୍ରିକାର ଉଦାହରଣ

ସବୁବେଳେ ଗରୀବ ଶ୍ରେଣୀର ଲୋକମାନେ ହିଁ ଅସୁବିଧାରେ ପଡ଼ିଛନ୍ତି

ଆଫ୍ରିକାକୁ ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଯେ ସେଠାରେ ପ୍ରକୃତ ମଜୁରୀ ୩୦/– ରୁ ୨୦/– ଖସିଆସିଛି ୫ ବର୍ଷ ମଧ୍ୟରେ । ସେଥିରୁ ବୁଝାଯାଏ ଯେ ଶ୍ରମିକ ଶ୍ରେଣୀର ଲୋକେ ସେମାନଙ୍କ ପ୍ରକୃତ ମଜୁରୀରୁ ଆହୁରି ୨୦% କମ୍ ପାଉଛନ୍ତି । ସହରରେ କାମର ପରିମାଣ ବଢିଚାଲିଛି । କିନ୍ତୁ ଗ୍ରାମାଞ୍ଚଳର ଲୋକ-ମାନେ ସୀମିତ ପରିଧି ଭିତରେ ରହି ଯାଉଛନ୍ତି । ସେହିଭଳି ଆମେ ଲାଟିନ୍ ଆମେରିକାରେ ମଧ୍ୟ ଦେଖିବାକୁ ପାଉ ୧୯୮୦-୮୮ ଭିତରେ ଲାଟିନ୍ ଆମେରି-କାର ମୁଣ୍ଡପିଛା ଜିନିଷ ପତ୍ରର ବ୍ୟବହାର ଧନୀ ଲୋକମାନଙ୍କ କ୍ଷେତ୍ରରେ ଶତକଡ଼ା ୧୬ ଭାଗ ବୃଦ୍ଧି ପାଇଥିବା ବେଳେ ଶ୍ରମିକ ଶ୍ରେଣୀର ବ୍ୟବହାର କ୍ଷମତା ଶତକଡ଼ା ୨୫ ଭାଗ କମି ଆସିଛି ଏଠି ବେକାରୀ ୬.୩% ବୃଦ୍ଧି ପାଇଛି ।

ଆଫ୍ରିକାର ଆନ୍ତର୍ଜାତୀୟ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ତଦ୍ରୂପ ଅବସ୍ଥା ଦେଖାଦେଇଛି । ୧୯୮୦–୮୭ ଭିତରେ ଲାଟିନ୍ ଆମେରିକାର ଦେଶମାନେ ଶତକଡ଼ା ୨୨ଭାଗ ବାଣିଜ୍ୟିକ କ୍ଷତି ସହିଥିବାବେଳେ ଆଫ୍ରିକାର କ୍ଷତି ପରିମାଣ ଥିଲା ଶତକଡ଼ା ୩୪ ଭାଗ । ୧୯୮୦–୮୬ ଭିତରେ ମୁଣ୍ଡପିଛା ରପ୍ତାନୀ ମଧ୍ୟ ଆଫ୍ରିକାରେ ହ୍ରାସ ପାଇଥିଲା ଆଫ୍ରିକାରେ କିନ୍ତୁ ସମ୍ପତ୍ତିରେ ଅସମାନତା ଓ ବଣ୍ଟନ କ୍ଷେତ୍ରରେ ଲାଟିନ୍ ଆମେରିକା ଆଗୁଆ ରହିଛି ।

**୪. ମଧ୍ୟବିତ୍ତଶ୍ରେଣୀର ଅବସ୍ଥା**

ଆଫ୍ରିକା ଏବଂ ଲାଟିନ୍ ଆମେରିକାରେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଯେଉଁ ଅର୍ଥନୈତିକ ପଦକ୍ଷେପ ନେଇଛି । ତାର ଫଳସ୍ୱରୂପ ସେହି ଦେଶରେ ଲୋକ ମାନଙ୍କର ଦୁଃଖ ବଢିଚାଲିଛି ସିନା କିନ୍ତୁ ଦାରିଦ୍ର୍ୟରୁ ସେମାନେ ଏପର୍ଯ୍ୟନ୍ତ ମୁକ୍ତି ପାଇ ପାରିନାହାନ୍ତି । ତା ଅର୍ଥ ନୁହେଁ ଯେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ପଦକ୍ଷେପ ଗୁଡ଼ିକ ମୂଲ୍ୟହୀନ ଯଦି ତାର ଫଳ କେହି ପାଇଛି ତେବେ ସେମାନେ ହେଲେ ଉଚ୍ଚ ମଧ୍ୟବିତ୍ତ ପରିବାର ଏବଂ ଧନୀ ଶ୍ରେଣୀର ବ୍ୟକ୍ତି । ଲାଟିନ୍ ଆମେରିକାରେ ଦେଖାଦେଇଛି ଯେ ସେ ଦେଶର ମୁଦ୍ରାର ଅବମୂଲ୍ୟାୟନ ସହିତ ବାହାର ଦେଶର ସମ୍ପତ୍ତିର ମୂଲ୍ୟ ତଥା ପାରିବାରିକ ଆୟ ତାଙ୍କ ଦେଶରେ ବଢ଼ି ବଢ଼ି ଚାଲିଛି । ଏହା ଫଳରେ ଉନ୍ନତ ଓ ଅନୁନ୍ନତ ଦେଶ ମଧ୍ୟରେ ପାର୍ଥକ୍ୟ ବଢି ବଢ଼ି ଚାଲିଛି । ଯେତେବେଳେ ବି କୌଣସି ବାହ୍ୟ ଦେଶର ସରକାର କୌଣସି ଏକ ଅନୁନ୍ନତ ଦେଶକୁ ସାହାଯ୍ୟ କରିବାକୁ ଚାହେଁ, ପ୍ରଥମେ ସେ ତା'ର ଲାଭ ହିଁ ଆଖିସାମ୍ନାରେ

ରଖିଥାଏ । ଯାହା ଫଳରେ ଏକ ଗରିବ ଦେଶର କାର୍ଯ୍ୟ ଉପାଦାନ ନ ଦେଇ-ପାରି ସେ ଏଭଳି ପଦାର୍ଥ ଦିଏ, ଯେଉଁଟା କି ଏକ ଗରୀବ ବ୍ୟକ୍ତି ପାଇଁ ମୂଲ୍ୟ-ହୀନ ହୋଇଥାଏ ।

ଏକ ମଧ୍ୟବିତ୍ତ ପରିବାରର ଅନେକ ସ୍ୱପ୍ନ ଥାଏ, ପଶ୍ଚିମ ଦେଶମାନେ ଯେତେବେଳେ ସେମାନଙ୍କର ବିଳାସପୂର୍ଣ୍ଣ ବସ୍ତୁ ଭାରତ ବର୍ଷରେ ପହଞ୍ଚାଇବାଆରମ୍ଭ କଲେ, ପ୍ରତ୍ୟେକଟି ମଧ୍ୟବିତ୍ତ ଶ୍ରେଣୀର ଭାରତୀୟ ତାର ମୋହଗ୍ରସ୍ତ ହେଲା । ସତେ ଯେମିତି କାର, ଫ୍ରିଜ୍, ସ୍କୁଟର ହିଁ ଜୀବନର ସବୁକିଛି । ତାର ସିମୀତ ଆୟ କେବେ ହେଲେ ତାହା ତାକୁ ଯୋଗାଇ ଦେଇ ପାରିଲା ନାହିଁ । ତେଣୁ ଧିରେ ଧିରେ ସେ ଅଧିକ ଦୁର୍ନୀତିଗ୍ରସ୍ତ ହୋଇପଡ଼ିଲା । ପାଶ୍ଚାତ୍ୟ ଦେଶମାନେ ଯେଉଁ ପରିମାଣରେ ଅର୍ଥନୈତିକ ଦୃଷ୍ଟିରୁ ଆଫ୍ରିକା ଓ ଲଟିନ୍ ଆମେରିକାକୁ ସାହାଯ୍ୟ କଲେ ସେତିକି ପରିମାଣରେ ସେମାନେ ଯଦି ଶିକ୍ଷାର ପ୍ରସାର ପାଇଁ ଚେଷ୍ଟାକରି-ଥାନ୍ତେ ତେବେ ସେମାନଙ୍କର ଦୁଃଖ ଏତେ ପରିମାଣରେ ବଢ଼ି ନ ଥା'ନ୍ତା । କିନ୍ତୁ ସେମାନଙ୍କୁ ଶିକ୍ଷା ଦେବା ଅର୍ଥ ଏକ ବିପ୍ଳବକୁ ଆହ୍ୱାନ ଜଣାଇବା । ହୁଏତ ମଧ୍ୟ-ବିତ୍ତ ପରିବାରର ଅଳ୍ପ କିଛି ବ୍ୟକ୍ତି ଶିକ୍ଷା ଉପରେ ଜୋର ଦେଇପାରନ୍ତି, ସେମା-ନଙ୍କ ପାଇଁ ଅର୍ଥର ମୂଲ୍ୟ ହୁଏତ କିଛି ନ ହୋଇପାରେ କିନ୍ତୁ ୯୦% ମଧ୍ୟବିତ୍ତ ଭାରତୀୟଙ୍କ ପାଇଁ ଅର୍ଥ ହିଁ ସବୁ କିଛି—ସେ ଯେକୌଣସି ଉପାୟରେ ଅସୁ ଏବଂ ଏଇଥିପାଇଁ ହୁଏତ ଭାରତ ବର୍ଷରେ ଦୁର୍ନୀତି ତାର ଚେର ବିସ୍ତାର କରିଚାଲିଛି । ଭାରତ ବର୍ଷରେ ଯେଭଳି ଭାବରେ ଅର୍ଥ ପାଇଁ ବ୍ୟକ୍ତିବିଶେଷ ଆସ୍ତେ ଆସ୍ତେ ବୈଷ-ୟିକ ଶିକ୍ଷା ଆଡ଼େ ପ୍ରଲୁବ୍ଧ ହୋଇ ପଡୁଛନ୍ତି ଫଳରେ ଭାରତର ମୂଳମନ୍ତ୍ର 'ମାନବତା ବାଦ'ର ମୂଲ୍ୟ ହ୍ରାସ ପାଇ ଚାଲିଛି । ମଧ୍ୟବିତ୍ତ ଏବଂ ଉଚ୍ଚ ମଧ୍ୟବିତ୍ତ ପରିବାରର ଏଭଳି ଦୃଷ୍ଟିଭଙ୍ଗୀକୁ ଆଖି ଆଗରେ ରଖି ନିମ୍ନ ମଧ୍ୟବିତ୍ତ ପରିବାର ଏବଂ ଗରିବ ଶ୍ରେଣୀର ବ୍ୟକ୍ତିମାନେ ମଧ୍ୟ ତାହା ଯେକୌଣସି ଭାବରେ ହାସଲ କରିବାକୁ ପଛାଉନାହାନ୍ତି ।

**୫. ସ୍ୱଳ୍ପସ୍ଥାୟୀ ଜୀବନରେ ଅବକ୍ଷୟ**

ନିମ୍ନମଧ୍ୟବିତ୍ତ ପରିବାର ଏବଂ ଶ୍ରମିକ ଶ୍ରେଣୀର ବ୍ୟକ୍ତିମାନଙ୍କର ଜୀବନ ପ୍ରଣାଳୀ ସମ୍ବନ୍ଧରେ ଆମେ କୌଣସି ଧାରଣା ପାଇପାରିନାହୁଁ । ମନେହୁଏ ସତେ ଯେପରି ପ୍ରତ୍ୟେକ ବର୍ଷ ଏହି ଶ୍ରମିକ ଶ୍ରେଣୀର ବ୍ୟକ୍ତିମାନଙ୍କର ଜୀବନ

ପ୍ରଣାଳୀରେ ଅଭୂତପୂର୍ବ ପରିବର୍ତ୍ତନ ଆସୁଛି । ଯେଉଁଭଳି ଭବରେ ଗତ ଦଶନ୍ଧି ମଧ୍ୟରେ ଶ୍ରମିକ ଶ୍ରେଣୀର ବ୍ୟକ୍ତିମାନଙ୍କର ଆୟ ତୁଳନାରେ ବ୍ୟୟ ବଢ଼ି ବଢ଼ି ଗ୍ଭଲିଛି । ତତ୍‌ସହିତ ଉନ୍ନତ ଏବଂ ଅନୁନ୍ନତ ଦେଶ ମଧ୍ୟରେ ଦୂରତା ବଢ଼ି ବଢ଼ି ଗ୍ଭଲିଛି । ବେଳେବେଳେ ଦେଖାଯାଏ କୌଣସି ଏକ ସୁଖ୍ୟାତି ସଂପନ୍ନ ପରିବାର ଅନେକ ଗୁଡ଼ିଏ କାର୍ଯ୍ୟକଳାପରେ ବ୍ୟସ୍ତ ଥିଲେ ମଧ୍ୟ ସେ ନିଜ ଦେଶର ବ୍ୟକ୍ତିମାନଙ୍କୁ ସୁଯୋଗ ନ ଦେଇ ସେ ଦେଶର ବ୍ୟକ୍ତିମାନଙ୍କୁ ସେ ସୁଯୋଗ ଦିଏ ଯେଉଁ ଦେଶରୁ ସେ ସାହାଯ୍ୟ ପାଇଥାଏ । ଏହା ଫଳରେ ଏକ ଧନୀକ ବ୍ୟକ୍ତି ଆହୁରି ଧନଶାଳୀ ହୁଏ ଏବଂ ଏକ ଶ୍ରମିକ 'କ୍ରୀତଦାସ' ସଦୃଶ ବିନାମୂଲ୍ୟରେ ଖଟି ଗ୍ଭଲିଥାଏ । କୌଣସି ବେସରକାରୀ ଶିଳ୍ପ ହୁଏତ ଅନେକ ବ୍ୟକ୍ତିଙ୍କୁ ବଞ୍ଚିବାର ଆହାର ଦେଇ-ପାରେ କିନ୍ତୁ ବଞ୍ଚିବାରମାନ ସେ ମଧ୍ୟ ଶେଷ କରି ଦେଇପାରେ । ଏହି ବେସର-କାରୀ ସଂସ୍ଥାଗୁଡ଼ିକ ମଣିଷକୁ ଖାଦ୍ୟ ଏବଂ ଆଡ଼ମ୍ବରୀୟ ଉପାଦାନ ପ୍ରଦାନକରିବା ସହିତ ତାକୁ ମଧ୍ୟ ଦୁର୍ନୀତିଗ୍ରସ୍ତ କରିପକାଏ । ପ୍ରତ୍ୟେକଟି ବେସରକାରୀ ସଂସ୍ଥା ତାର ଲଭକୁ ହିଁ ଆଖି ଆଗରେ ରଖେ । ଲଭ ଦେଉଥିବା ବ୍ୟକ୍ତିଟି ଶିକ୍ଷିତ ବା ଅଶିକ୍ଷିତ ହୋଇଥାଉ ତାର କିଛି ଯାଏ ଆସେ ନାହିଁ । ଏଭଳି ପରିବେଶରେ କୌଣସି ଦେଶର ଶିକ୍ଷାରମାନ ହ୍ରାସ ହେବା ସ୍ୱାଭବିକ । କିନ୍ତୁ ତା ସହିତ ସମାଜ ମଧ୍ୟ ଦୁର୍ନୀତି ଓ ଅନ୍ୟାନ୍ୟ ଅପରାଧର ଶିକାର ହୋଇଯାଏ ।

ତେବେ ୧୯୮୦ ମସିହାପରେ ଭରତର ଅବସ୍ଥା ଠିକ୍ ସମିତି ନୁହେଁ କି ? ଭରତ ଭଳି ଏକ ଆଧ୍ୟାତ୍ମିକ ମୂଲ୍ୟବୋଧ ଥିବା ଦେଶରେ ଅର୍ଥର ମୂଲ୍ୟ ବଢ଼ି ଗ୍ଭଲିଥିଲବେଳେ ମାନବତାବାଦର ଦ୍ରୁତ ହ୍ରାସ ହୋଇଗ୍ଭଲିଛି । କିନ୍ତୁ ଆମର ମନେ ରଖିବା ଉଚିତ ଯେଉଁ ଦେଶଗୁଡ଼ିକ ଏଭଳି ପଥରେ ବହୁ ଆଗରୁ ଆଗେଇ ଗ୍ଭଲି ଛନ୍ତି ସେ ଦେଶର ସମାଜ ସଂପୂର୍ଣ୍ଣ ଭବରେ ଦୂଷିତ । ସେହିଭଳି ଦେଶକୁ ଆମେ ଏକ ଅନ୍ଧସ୍ତାବକ ଭଳି ପୂଜା କରିଗ୍ଭଲିଛୁ ଏବଂ ସେଭଳି ହେବାକୁ ଗ୍ଭହୁଁଛୁ ।

୭. କଷ୍ଟପୂର୍ଣ୍ଣ ଗ୍ରାମ୍ୟ ଜୀବନ

ସହର ଓ ନଗରମାନଙ୍କରେ ଦିନକୁ ଦିନ ବେକାରୀ ସମସ୍ୟା ବଢ଼ି ଗ୍ଭଲିଛି । ତା'ସହିତ ବଢ଼ିଗ୍ଭଲିଛି ଲୋକମାନଙ୍କର ଦୁଃଖ ଓ ଯନ୍ତ୍ରଣା, ତେଣୁ ସର-କାର ଏବେ ସ୍ୱପ୍ନ ଦେଖୁଛନ୍ତି—"ଗାଁକୁ ଫେରିଗ୍ଭଲ । ଗାଁ ହିଁ ଆମର ସବୁକିଛି ।" ଏହି ସ୍ୱପ୍ନ ଯେ ଦେଖୁଛନ୍ତି ଏଇଥିପାଇଁ ଯେ ସହର ତଥା ନଗରରେ ପ୍ରତ୍ୟେକ

ବ୍ୟକ୍ତି ବିଶେଷଙ୍କୁ ସେ କର୍ମ ଯୋଗାଇ ପାରିବେ ନାହିଁ ବା ଖଣ୍ଡେ ବାସଗୃହ ଦେଇପାରିବେ ନାହିଁ ଏବଂ କୌଣସି ଏକ ବ୍ୟକ୍ତି ଯେତେବେଳେ କୌଣସି ଗାଁରେ ପହଞ୍ଚେ–ସେ ଦେଖେ ୫୦ ବର୍ଷ ପୂର୍ବେ ଯାହା ଥିଲା ଆଜି ସେହିଭଳି ଅପରିବର୍ତ୍ତିତ ରହିଛି । ତେଣୁ ଗ୍ରାମରେ ଜନ୍ମ କରିବା ପୂର୍ବରୁ ସେ ସହରକୁ ଫେରିଆସେ । କାରଣ ସେ ଜାଣେ ତାର ସ୍ୱପ୍ନ ଗାଁରେ କେବେହେଲେ ସାକାର ରୂପ ନେଇପାରିବ ନାହିଁ ।

ପ୍ରତ୍ୟେକଟି ଆନ୍ତର୍ଜାତୀୟ ଅର୍ଥନୈତିକ ସଂସ୍ଥାର ଇଚ୍ଛା ଏକ ଅନୁନ୍ନତ ଦେଶରେ କୃଷିର ଅଗ୍ରଗତି ହେଉ କିନ୍ତୁ ସେ ଅଗ୍ରଗତିର ଫଳ ହାସଲ କରେ ଗ୍ରାମରେ ଥିବା ଏକ ପୁଞ୍ଜିପତି କୃଷକ । ଗରୀବ କୃଷକ ସେଇ ଗରୀବ ହୋଇ ରହିଯାଏ । ବେଳେବେଳେ ଏପରି ମଧ୍ୟ ହୁଏ ଦୁଇ ଓଳି ଖାଦ୍ୟ ପାଇଁ ସେ ଦିନ ମଜୁରିଆ ହେବାକୁ ପଛଘୁଞ୍ଚା ଦିଏ ନାହିଁ । ସରକାର ଯାହା ଘୋଷଣା କରନ୍ତି ତା'ପାଖରେ ଶହେରୁ ଦଶଭାଗ ମଧ୍ୟ ପହଞ୍ଚେ ନାହିଁ ।ସାର, ଟ୍ରାକ୍ଟର ତାପାଇଁ ସ୍ୱପ୍ନ ହୋଇପଡ଼େ । ଶେଷରେ ସେ ଶିକାର ହୁଏ ସେ ଗ୍ରାମ ମହାଜନର ଯାହା ପାଖରେ ସେ ବେଠି ଖଟୁଥିଲା ହୁଏତ ତାର ବାପା ଓ ଜେଜେ ବାପା ଏବଂ ମହାଜନଠାରୁ ସେ କରଜ ନିଏ । ତାକୁ ସେ ସିଧା ସଳଖ ପ୍ରଶ୍ନଟିଏ ପଚାରିପାରେ ନାହିଁ–"ତୁମେ ମୋ ପରିଶ୍ରମର ଏତେ କମ୍ ମୂଲ୍ୟ ଦେଲ କାହିଁକି ?" ତେଣୁ ସେଭଳି ଅର୍ଥନୈତିକ ସଂସ୍ଥାର ମୂଲ୍ୟ ବା କ'ଣ ଯାହା ଗୋଟିଏ ଗରୀବକୁ ଆହୁରି ଗରିବ କରିଦିଏ ଏବଂ ଧନୀ କୃଷକକୁ ଆହୁରି ଧନୀ କରି ଗଢିତୋଳେ ?

**୭. ପ୍ରତିରୋଧର ଅଭାବ**

ଏହା ନିଃସନ୍ଦେହ ଯେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ପରିଚାଳିତ ଅର୍ଥନୈତିକ ପଦକ୍ଷେପ ଆଧୁନିକ ମଣିଷର ଜୀବନ ଧାରାକୁ ଏକ ନୂତନ ସଂଜ୍ଞା ଦେଇଛି । ତେବେ ପ୍ରତ୍ୟେକଟି ସରକାର ଜାତୀୟ ଲାଭ ଅପେକ୍ଷା ଆନ୍ତର୍ଜାତୀୟ ଲାଭଉପରେ ବେଶୀ ଜୋର ଦେଉଛି । ପୁଞ୍ଜି ଲଗାଣ ଅପେକ୍ଷା ଲାଭ ଉପରେ ବେଶୀ ଗୁରୁତ୍ୱ ଦିଆଯାଉଛି । ସେଥିପାଇଁ ବେସରକାରୀ ସଂସ୍ଥାର ସଂଖ୍ୟା ଛତୁ ଫୁଟିଲା ଭଳି ବଢି ବଢି ଚାଲିଛି । ଜାତୀୟ ବ୍ୟବସାୟୀ ସଂସ୍ଥା ତାର ପରିଚୟ ଧିରେ ଧିରେ ହରାଇ-ବସୁଛି । କାରଣ ସରକାର ବେଶୀ ଗୁରୁତ୍ୱ ଦେଉଛନ୍ତି ଆନ୍ତର୍ଜାତୀୟ ବ୍ୟବସାୟୀ ସଂସ୍ଥା ଉପରେ, ଏହି ଜାତୀୟ ଓ ଆନ୍ତର୍ଜାତୀୟ ବ୍ୟବସାୟୀ ସଂସ୍ଥାର ସଂଗ୍ରାମର

ଶିକାର ହେଉଛନ୍ତି ସେହି ଶ୍ରମିକ ଶ୍ରେଣୀ ଯେଉଁମାନଙ୍କ ପାଇଁ ବଞ୍ଚିବାଟା ଦୁର୍ବିସହ ହୋଇପଡ଼ିଛି । ତା'ଫଳରେ ଛୋଟ ଚାକିରୀ କିମ୍ବା ବ୍ୟବସାୟ କିମ୍ବା ଘରୋଇ ଉତ୍ପାଦନର ଚାହିଦା ବଢ଼ି ବଢ଼ି ଚାଲିଛି । ଏହି ପ୍ରସବର ଶିକାର ହେଉଛନ୍ତି ସେହି ଛୋଟ ଗ୍ରାମିଣ କୃଷକମାନେ ଯେଉଁମାନେ ବର୍ଷସାରା କଠିନ ପରିଶ୍ରମପରେ ମଧ୍ୟ ଦୁଇଓଳି ମୁଠିଏ ଖାଇବାକୁ ପାଉନାହାନ୍ତି ।

ତା ମାନେ ନୁହେଁ ଯେ ଏହା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳିତ ହେଉନାହିଁ । ପ୍ରତ୍ୟେକଟି ବ୍ୟକ୍ତି ବିଶେଷ ବା ରାଜନୈତିକ ଦଳ ତାର ଜୀବନ ଧାରାର ପ୍ରଣାଳୀକୁ ଏଇ ଆନ୍ତର୍ଜାତୀୟ ମହାପ୍ରବାହରୁ ବଞ୍ଚିବାକୁ ଚାହେଁ । କିନ୍ତୁ ସମାଜ ଓ ରାଜନୈତିକ ଦଳ ତାକୁ ତାହା କରାଇବାକୁ ଦେଇ ନ ଥାଏ । ଫଳରେ ଏକ ପ୍ରକୃତ ବୁଦ୍ଧିମାନ୍ ବ୍ୟକ୍ତି ତାର କୌଶଳ ପ୍ରଦର୍ଶନ କରିବାରୁ ବଞ୍ଚିତ ହୋଇ ଥାଏ । ତେଣୁ ସେ ନିଜ ଦେଶ ଛାଡ଼ିବାକୁ ପଛଘୁଞ୍ଚା ଦିଏ ନାହିଁ । ସେ ଯେତେବେଳେ ଦେଖେ ତା ନିଜ ଦେଶରେ ତାର ବୁଦ୍ଧିମତାର କୌଣସି ମୂଲ୍ୟ ହିଁ ନାହିଁ ସେ ବାଧ୍ୟ ହୋଇ ପ୍ରବାସୀ ଭାରତୀୟରେ ପରିଣତ ହୁଏ । ଯେଉଁ କେତେକ ଧନୀକ ବ୍ୟକ୍ତି ଭାରତ ବର୍ଷରେ ଅଛନ୍ତି ସେମାନଙ୍କର ଭାରତୀୟ ମୁଦ୍ରାରେ କୌଣସି ଆସ୍ଥା ହିଁ ନାହିଁ । ତେଣୁ ସେମାନେ ଯେଉଁ ଲାଭାଂଶ ପା'ନ୍ତି ତାହା ପ୍ରବାସରେ ହିଁ ଭବିଷ୍ୟତ ପାଇଁ ଜମାକରନ୍ତି । ଯାହାଫଳରେ ଅର୍ଥନୈତିକ ବିଷମତା ବଢ଼ି ବଢ଼ି ଚାଲେ ।

## ୮. ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମ ଓ ଭାରତ

ଆମେ ଏଠି ଭାରତରେ ଯେଉଁ ସଂକଟର ସମ୍ମୁଖୀନ ହୋଇଛୁ ତାହାର ବିଚାର କରାଯାଉ । ସଂସ୍କାର ସପକ୍ଷବାଦୀ ଅର୍ଥନୀତିଜ୍ଞ ତଥା ସରକାର କହୁଛନ୍ତି ଯେ ଭାରତର ଅବସ୍ଥା ଅଲଗା । ଯେଉଁସବୁ ନୀତି ଆମମାନଙ୍କର ସ୍ୱାର୍ଥରେ ଯାଉନାହିଁ ତାହାକୁ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଏବଂ ବିଶ୍ୱବ୍ୟାଙ୍କ ଆମ ଉପରେ ଲଦି ଦେଇପାରିବେ ନାହିଁ । ଢାଞ୍ଚାଗତ ପରିବର୍ତ୍ତନ ଫଳରେ ଗରୀବ ଲୋକ ମାନଙ୍କୁ ଯେଉଁ ମୂଲ୍ୟ ଦେବାକୁ ହେବ ସେଥିପ୍ରତି ଆମେ ଦୃଷ୍ଟି ଦେଉଛୁ । ସରକାର ଏକଥା ମଧ୍ୟ କହୁଛନ୍ତି ଯେ ଆନ୍ତର୍ଜାତିକ ଅର୍ଥ ସଙ୍ଗଠନମାନେ ମଧ୍ୟ ଏକଥା ଜାଣନ୍ତି ।

କିନ୍ତୁ ନୂଆ ଆର୍ଥିକ ନୀତିର କୁ-ପ୍ରଭାବ ଏବେ ପ୍ରମାଣିତ ହେବାକୁ ଲାଗିଲାଣି ଯୋଜନା କମିଶନର ହିସାବ ଅନୁଯାୟୀ ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମର ପ୍ରଥମ

ବର୍ଷରେ କେବଳ ଦେଶରେ ୩୫ ଲକ୍ଷ ଚାକିରୀ ସୁଯୋଗ ନଷ୍ଟ ହୋଇଛି । ସେହି-ଭଳି ଦେଶରେ ବେକାରୀ ଯେଉଁ ଭୟଙ୍କର ଅବସ୍ଥା ସୃଷ୍ଟି କରିଛି ତାହା ସମସ୍ତେ ଜାଣନ୍ତି ସ୍ୱାଧୀନ ଭାବରେ କରାଯାଇଥିବା ଏକ ଅନୁଷ୍ଠାନରୁ ଜଣାପଡ଼େ ଯେ ଅର୍ଥନୈତିକ ସଂସ୍କାର ଯୋଗୁଁ ୧୯୯୨–୯୩ ବର୍ଷରେ କୋଟି କୋଟି ଲୋକ ଚାକିରୀ ସୁଯୋଗ ହରାଇବେ ।

ଆଜି ଦାରିଦ୍ର୍ୟ ଓ ଖାଇବାକୁ ପାଇବାଟା କେବଳ କଳାହାଣ୍ଡିରେ ସିମୀତ ହୋଇ ରହିନାହିଁ । ଅନାହାର ମୃତ୍ୟୁର ଖବର ଆନ୍ଧ୍ରପ୍ରଦେଶ, ମଧ୍ୟପ୍ରଦେଶ ଓ ମହାଷ୍ଟ୍ରର ମଧ୍ୟ ଆସୁଛି । ଆନ୍ତର୍ଜାତୀୟ ଶ୍ରମ ସଂଗଠନ ହିସାବକରି ଦେଖିଛି ଯେ ବର୍ତ୍ତମାନର ଅର୍ଥନୈତିକ ସଂସ୍କାର କାର୍ଯ୍ୟକ୍ରମ ଚାକିରୀ ଓ ବର୍ତ୍ତମାନର ଅର୍ଥନୈତିକ ସଂସ୍କାର କାର୍ଯ୍ୟକ୍ରମ ଚାକିରୀ ଉପରେ ବ୍ୟାପକ ପ୍ରଭାବ ପକାଇବ ଏବଂ ଏହା ଦାରିଦ୍ର୍ୟଜନିତ କଷାଘାତକୁ ଆହୁରି ଅଧିକ କରିବ । ଶ୍ରମ ସଂଗଠନର ହିସାବ ହେଉଛି ଯେ ନୂଆ କାର୍ଯ୍ୟକ୍ରମ ଯୋଗୁଁ ଭାରତରେ ୮୦ ଲକ୍ଷ ଲୋକେ ବେକାର ହୋଇଯିବେ ।

ସେହିଭଳି ବଜେଟ୍‌ରେ ଗ୍ରାମ୍ୟ ନିଯୁକ୍ତି କ୍ଷେତ୍ରରେ ମଧ୍ୟ ବ୍ୟୟ ବ୍ୟବସ୍ଥା ହ୍ରାସ ହୋଇଚାଲିଛି । ୧୯୯୨–୯୩ ବଜେଟରେ ସଂପତ୍ତିକର, ଆୟକର ଓ ବ୍ୟୟକର ଇତ୍ୟାଦି କ୍ଷେତ୍ରରେ ଧନୀଙ୍କ ବର୍ଗଙ୍କ ପାଇଁ ବିଭିନ୍ନ ପ୍ରକାର ଛାଡ଼ ଦିଆଯାଇଥିବାବେଳେ ସାଧାରଣ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଖାଦ୍ୟ ସବସିଡ୍, ସ୍ୱାସ୍ଥ୍ୟ, ଶିକ୍ଷା ଗ୍ରାମ୍ୟ ମଙ୍ଗଳ କାର୍ଯ୍ୟକ୍ରମରେ ବ୍ୟାପକ କାଟତି କରାଯାଇଛି । ୧୯୯୩ ବର୍ଷରେ ଅନେକ ମୌଳିକ ଖାଦ୍ୟଶସ୍ୟ ଯଥା ଗହମ, ଚାଉଳ ଇତ୍ୟାଦିର ମୂଲ୍ୟ ବଢ଼ାଇ ଦିଆଯାଇଛି । ଅଧିକନ୍ତୁ ପରିବେଶ ପ୍ରଦୂଷଣ, ଜଳଯୋଗାଣ (ଗ୍ରାମାଞ୍ଚଳରେ) ଅଣ ପାରମ୍ପାରିକ ଶକ୍ତି, ପତିତ ଜମିଉଦ୍ଧାର ଏ ସବୁ କ୍ଷେତ୍ରରେ ବଜେଟ୍‌ରେ ପରିଣାମ ବହୁତ କମାଇ ଦିଆଯାଇଛି ।

## ୯. ଅର୍ଥନୈତିକ ନଗ୍ନପତ୍ତାର ଅଭାବ

ଢ଼ାଞ୍ଚାଗତ ସୁଧାର କାର୍ଯ୍ୟକ୍ରମର ପରିଣତି କଣ ଯେ ବିଷୟରେ ଆମର କୌଣସି ଅଭିଜ୍ଞତା ଏପର୍ଯ୍ୟନ୍ତ ହୋଇନାହିଁ କାରଣ ଏହି କାର୍ଯ୍ୟକ୍ରମ ଖୁବ୍ ନିକଟରେ ହିଁ ଆରମ୍ଭ ହୋଇଛି । ତେବେ ନୂଆ ଅର୍ଥନୈତିକ କାର୍ଯ୍ୟକ୍ରମ ଯେ ଗରିବକୁ ଆହୁରି ଗରିବ କରିଦେବ ଏହାଅନୁମାନ କରିବାରେ ବିଶେଷ କଷ୍ଟ ହେବନାହିଁ । ଏହି

ଅନୁମାନ ସକାଶେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଏବଂ ବିଶ୍ୱବ୍ୟାଙ୍କ୍ 'ନିରାପତ୍ତାଜାଲ୍' ଯେଉଁ ନୂଆ ମ-୭୧ ବାହାର କରିଛନ୍ତି ତାକୁ ଦେଖିବା ଦରକାର । ଏହି 'ନିରାପତ୍ତା ଜାଲ'ର ମୂଳ ଲକ୍ଷ୍ୟ ହେଉଛି ପ୍ରସ୍ଥାନ ନୀତି ଯୋଗୁଁ ଯେଉଁମାନେ କ୍ଷତି ସହିବେ ସେମାନଙ୍କୁ ସୁରକ୍ଷା ପ୍ରଦାନ କରିବା । ଏହାଛଡ଼ା ଯେଉଁ ସବୁ ଉଦ୍ୟୋଗରେ ଶ୍ରମିକ୍ କର୍ମଚାରୀ ମାନେ ଛଟେଇ ହେବେ ସେମାନଙ୍କ ପାଇଁ ମଧ୍ୟ ଏହି 'ନିରାପତ୍ତା ଜାଲ' ଭିତରେ ଥିବା ଅର୍ଥକୁ ବ୍ୟୟ କରାଯିବ ।

ନୂଆ ନିଯୁକ୍ତି ସୃଷ୍ଟି ସ୍ୱାସ୍ଥ୍ୟ-ବ୍ୟବସ୍ଥା ଏବଂ ଶିକ୍ଷାର ପ୍ରସାର ପାଇଁ ଅଷ୍ଟମ ଯୋଜନା କାଳରେ ବ୍ୟାପକ ବ୍ୟବସ୍ଥା ହୋଇଥିଲେହେଁ ୧୯୯୧-୯୩ ବର୍ଷରେ ସ୍ୱାସ୍ଥ୍ୟ ଓ ଶିକ୍ଷା ପାଇଁ ଯେଉଁ ବ୍ୟୟବରାଦ ହେଉଛି ତାହା ହ୍ରାସ ପାଇଥିବା କଥା ଆଗରୁ ଉଲ୍ଲେଖ କରାଯାଇଛି । ଏହି ଦୁଇ ବର୍ଷ ଭିତରେ ସାମାଜିକ କ୍ଷେତ୍ର ପାଇଁ ଉଦ୍ଦିଷ୍ଟ ଖର୍ଚ୍ଚରୁ ପ୍ରାୟ ୧୧୦୦ କୋଟି ଟଙ୍କା କାଟତି ହୋଇଛି । ସେହିଭଳି ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳ ଭିତରେ ବ୍ୟବଧାନ ବହୁତ ବଢ଼ିଛି ।

ଭାରତରେ ଦରିଦ୍ରଙ୍କ ସଂଖ୍ୟା ଏବେ ପାଖାପାଖି ୩୮ କୋଟି, ଦଶହଜାର ସୀମାରେଖା ତଳେ ଥିବା ଏହି ଲୋକମାନେ ଦରବୃଦ୍ଧି, କର୍ମକ୍ଷେତ୍ରରେ ନିଯୁକ୍ତିର ଅଭାବ ଏବଂ ଉତ୍ପାଦନ ପାଇଁ ସମ୍ବଳର ଅଭାବ ଏହିସବୁ ସମସ୍ୟା ଦ୍ୱାରା ହନ୍ତସନ୍ତ ହେଉଛନ୍ତି । ସେମାନେ କ୍ରମାଗତ ଭାବେ ଦୃଷ୍ଟିହୀନତା ଏବଂ ଅନାହାରର ଶିକାର ହେଉଛନ୍ତି । ଦାରିଦ୍ର୍ୟ ବିହିନ ଗୁରୁତର ସମସ୍ୟା ସରକାରଙ୍କ 'ନିରାପତ୍ତା ଜାରି' ଦ୍ୱାରା ସମାଧିତ ହୋଇପାରିବ ନାହିଁ ଏହା ନିଃସନ୍ଦେହରେ କୁହାଯାଇପାରେ ।

## ୧୦. ବିକୃତ ପ୍ରଗତି

ଅଶୀ ଦଶକରେ ଯେତେବେଳେ ନୂଆ ଆର୍ଥିକ ନୀତିଟି ଡ଼ିମ୍ବ ଫୁଟାଇବା ଅବସ୍ଥାରେ ଥିଲା ସେତେବେଳଠାରୁ ସବୁପ୍ରକାର ସୁଯୋଗ ସୁବିଧା କେବଳ ଉଚ୍ଚ-ବର୍ଗର ଓ ଧନୀକ ଶ୍ରେଣୀର ଲୋକମାନେ ହିଁ ମାରିନେବାରେ ବ୍ୟସ୍ତ । ଅଶୀ ଦଶନ୍ଧରେ ଆୟ ସମ୍ପତ୍ତି ବଣ୍ଟନ କ୍ଷେତ୍ରରେ ଖରାପ ଅବସ୍ଥା ସୃଷ୍ଟି ହେଲା କାରଣ ରାଜସ୍ୱ, ଆର୍ଥିକ, ଶିଳ୍ପ ଓ ବୈଦେଶିକ ନୀତିରେ ସମସ୍ୟା ଦେଖାଦେଲା ତଥା ସ୍ୱାମ ଗୁଡ଼ିକ ବହୁଳ ଭାବରେ ପଦାକୁ ଆସିଲା । ଦରଦାମ, ଉପଭୋକ୍ତା ସାମଗ୍ରୀ ଇତ୍ୟାଦିରେ ଯେଉଁ ଅସଂତୁଳନ ଦେଖାଦେଲା ତାହା ମୁଖ୍ୟତଃ ଏହି ବହୁତ ଆର୍ଥିକ ନୀତିର ଫଳ । ଜମିର ବ୍ୟବହାର ଏବଂ ଖାଦ୍ୟଦ୍ରବ୍ୟର ଯୋଗାଣ ତଥା ଶିଳ୍ପ

ଉତ୍ପାଦନରେ ପରିବର୍ତ୍ତନ ଯୋଗୁଁ ଇଲେକ୍‌ଟ୍ରୋନିକ ଇତ୍ୟାଦି ସାମଗ୍ରୀର ବ୍ୟବହାର ପ୍ରବଳ ହେଲା । ଏଥିପାଇଁ ଫଳରେ ସଂଗଠିତ ଶିଳ୍ପ ଶ୍ରମିକମାନେ ସବୁଠାରୁ ବେଶୀ କ୍ଷତି ସହିଛନ୍ତି ଏବଂ ସେମାନେ ଗୋଷ୍ଠି ପାଖକୁ ଠେଲି ହୋଇ ଯିବାର ଅବସ୍ଥା ସୃଷ୍ଟି ହୋଇଛି ।

## ୧୧ । ସାଂପ୍ରଦାୟିକତା

ଚାକିରୀ ଏବଂ ସାମ୍ପ୍ରଦାୟିକତା ଭଳି ସାମାଜିକ ଉତ୍ତେଜନା ଭିତରେ ଗୂଢ଼ ସଂପର୍କ ରହିଛି ଏକଥା ଅତ୍ୟନ୍ତ ସତ୍ୟ । ମହାରାଷ୍ଟ୍ରରେ ଆମେ ବହୁ ସାମ୍ପ୍ରଦାୟିକ ଦଙ୍ଗା ଦେଖିଲୁ ତାର କାରଣ ଏହାର ଶିଳ୍ପାଞ୍ଚଳରେ ବିଗତ ବର୍ଷ ମାନଙ୍କରେ ନିଯୁକ୍ତିର ସୁଯୋଗ କମିଛି ଯେଉଁଠି ଶ୍ରମିକ ଶ୍ରେଣୀ ଅସହାୟ ଅବସ୍ଥାରେ ପଡ଼ିଥାଏ ସେଠିହିଁ ସାମ୍ପ୍ରଦାୟିକ ଶକ୍ତି ମାନେ ଅଧିକ ତତ୍ପର ହୋଇଥାନ୍ତି । ସେହିଭଳି ୧୯୯୦ ମଧ୍ୟ ଭାଗରେ 'ମଣ୍ଡଳ' ନାରେ ଯେଉଁ ଉତ୍ତେଜନା ଦେଖାଦେଲା ତାହା ଦେଶରେ ଏକ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କରିଥିଲା । ୨୭% ସଂରକ୍ଷଣ ବ୍ୟବସ୍ଥା ଫଳରେ କେନ୍ଦ୍ରୀୟ ସ୍ତରରେ ଯେତିକି ଚାକିରୀ ପଛୁଆ ଶ୍ରେଣୀ ପାଇଲେ ତାର ସଂଖ୍ୟା ମାତ୍ର ୪୦ ହଜାର । ସାଧାରଣତଃ ଦେଖାଯାଇଛି ଯେ ହିଂସା, ସାମ୍ପ୍ରଦାୟିକ ଦଙ୍ଗା ଏବଂ ଜାତିଗତ ସଂଘର୍ଷର ଦରିଦ୍ର ଲୋକମାନେ ହିଁ ଶିକାର ହୋଇଥାନ୍ତି । ତାତ୍ପର୍ଯ୍ୟର ବିଷୟ ଏହି ଯେ ହିନ୍ଦୁ–ମୁସଲିମ ବିଭାଜନକୁ ଯେଉଁମାନେ ପ୍ରୋତ୍ସାହନ ଦେଇଥିଲେ ସେମାନେ ନୂଆ ଆର୍ଥିକ ନୀତିକୁ ସମର୍ଥନ କରିଛନ୍ତି ।

ଆମ ସମାଜରେ ଯେଉଁ ଗୁଡିକ ସାଧାରଣ ସମସ୍ୟା ବୋଲି ପରିଗଣିତ ହେଉଛି ସେଗୁଡ଼ିକ ଉପରେ ଦୃଷ୍ଟି ଦିଆଯିବା ଦରକାର ଅନାହାର, ଦୃଷ୍ଟିହୀନତା, ନିରକ୍ଷରତା, ବେକାରୀ ଓ ହୀନସ୍ୱାସ୍ଥ୍ୟ ପ୍ରତ୍ୟେକ ଦେଶର ଦରିଦ୍ର ଲୋକଙ୍କୁ ଗ୍ରାସ କରିଥାଏ । ଗରୀବଙ୍କ ଭିତରେ ମୁସଲିମ ମାନେ ଅଧିକ ଗରୀବ । ଧର୍ମ ନାମରେ ଦେଶର ଧନୀ ଲୋକେ ଗରିବ ମାନଙ୍କର ସମସ୍ୟାକୁ ଭୁଲିଦେବା ଅନୁଚିତ । ଗରିବ ଓ ଉପେକ୍ଷିତ ଶ୍ରେଣୀର ଲୋକଙ୍କୁ ସାମ୍ପ୍ରଦାୟିକ ବିଭାଜନରୁ ମୁକ୍ତି କରାଯିବା ଦରକାର ଉତ୍ତମ ଜୀବନ ଯାପନ ସକାଶେ ପ୍ରକୃତ ସମସ୍ୟା ଉପରେ ଆକ୍ରମଣ କରାଯିବା ଦରକାର । ମିଛ ଶତ୍ରୁ ମାନଙ୍କ ସହିତ ଲଢ଼େଇ କରିବାର କୌଣସି ଆବଶ୍ୟକତା ନାହିଁ ।

୧୨ । କାର୍ଯ୍ୟକ୍ରମ ବିଫଳ

ଆମର ପ୍ରକୃତ ସମସ୍ୟା ହେଉଛି ଗରିବ ଓ ନିଷ୍ପେଷିତ ଲୋକମାନଙ୍କୁ ସବୁଦିନପାଇଁ ଜୀବିକାର ସୁଯୋଗ ଯୋଗାଇବା । ମଣିଷର ମୌଳିକ ଆବଶ୍ୟକତା ଗୁଡ଼ିକ ମୂଳରୁ ହିଁ ପୂରଣ କରଯିବା ଦରକାର ଯାହାକି ସମଗ୍ର ଉନ୍ନତି ପର୍କ୍ରିୟାକୁ ସାହାଯ୍ୟ କରିବ । ମୌଳିକ ଆବଶ୍ୟକତା (ଖାଦ୍ୟ, ବସ୍ତ୍ର, ଆଶ୍ରୟ, ଶିକ୍ଷା, ସ୍ୱାସ୍ଥ୍ୟ ଓ କାମ) ଏ ଗୁଡ଼ିକ ଉନ୍ନତିର ମୋଟର ହେବା ଉଚିତ । କେବଳ ଲକ୍ଷ୍ୟ ରଖିବା ଯଥେଷ୍ଟ ନୁହେଁ । ଉନ୍ନତି ଏହିଭଳି ହେବା ଉଚିତ ଯାହାକି ଏକ ମୁକ୍ତ ଜୀବନ ଧାର ପାଇଁ ପ୍ରତିଶ୍ରୁତି ଦେଇ ପାରିବ ଏବଂ ଉତ୍ପାଦନ ପ୍ରଣାଳୀ ଏଭଳିହେବ ଯାହାକି ଗରିବ ଲୋକଙ୍କ ପାଇଁ ଉନ୍ନତର ସୁଯୋଗ ଯୋଗାଇବ । ବର୍ତ୍ତମାନର 'ସୁରକ୍ଷା ଜାଲ' ଅନ୍ତର୍ଗତ ଯେତେ ପ୍ରକାର ଉଦ୍ୟମ ହେଉଛି ସେଗୁଡ଼ିକର ପୁନଗ-ବୃତ୍ତି ହେବା ଦରକାର । ଏହି ପ୍ରସଙ୍ଗରେ ଆଇ.ଆର.ଡ଼ି.ପି ଏବଂ ଜବାହାର ରୋଜଗାର ଯୋଜନାରୁ ଯାହାଆମେ ଶିକ୍ଷା କରିଛେ ତାହା ଏଠି ଆଲୋଚନା ହେବା ଦରକାର । ଅଭିଜ୍ଞତାରୁ ଜଣାପଡ଼ିଛି ଯେ ଏହିସବୁ କାର୍ଯ୍ୟକ୍ରମ ସାମରିକ ଉନ୍ନତି କ୍ଷେତ୍ରରେ ବିଶେଷ କିଛି ସାହାଯ୍ୟ କରିନାହାନ୍ତି ଏବଂ ଏସବୁ କାର୍ଯ୍ୟକ୍ରମରୁ ଯାହା ଆଶା କରଯାଉଥିଲା ତାହା ମିଳିପାରିନାହିଁ । ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମର ଗୋଟିଏ ଦୁର୍ବଳତା ହେଉଛି ଯେ ଅଧିକାରୀ ହିତାଧିକାରୀ ମାନଙ୍କ ଉପରେ ବକେୟା ରହିଛି ଏବଂ ଏଥିରେ ସନ୍ଦେହ ହେବା ସ୍ୱାଭବିକ ଯେ ହିତାଧିକାରୀ ମାନେ ଋଣ ପାର୍ଶ୍ୱରୁ ମୁକୁଳିପାରିବେ ନାହିଁ । ଅଧିକନ୍ତୁ, ଯେଉଁମାନେ ଯଥେଷ୍ଟ ଆୟ କରିପାରୁଛନ୍ତି ଏବଂ ଦାରିଦ୍ର୍ୟର ସୀମାରେଖା ଉପରକୁ ଉଠିଛନ୍ତି ସେମାନେ ପୁଣି ଦାରିଦ୍ର୍ୟ ଭିତରକୁ ଠେଲି ହେଇଯାଉଛନ୍ତି ।

ଆଇ. ଆର. ଡ଼ିପି, ଜବାହର ରୋଜଗାର ଯୋଜନ ଏବଂ ଅନ୍ୟାନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ କେବଳ ଗରିବ ଲୋକ ମାନଙ୍କ ପାଇଁ ରିଲିଫ ଭଳି କାମ କରିପାରେ । ଏବେ ତର୍କ ଚାଲିଛି ସରକାରଙ୍କ ସେହି କାର୍ଯ୍ୟକ୍ରମ ଗୁଡ଼ିକ ମଣିଷର ମର୍ଯ୍ୟାଦା, ଅର୍ଥନୈତିକ ସମତା ଏବଂ ସାମାଜିକ ନ୍ୟାୟର ଲକ୍ଷ୍ୟକୁ କେତେଦୂର ପୂରଣ କରିପାରୁଛି । ଯେ କୌଣସି କାର୍ଯ୍ୟକ୍ରମ ବା ନୀତିର ତତ୍କ୍ଷଣାତ ଉଦ୍ଦେଶ୍ୟ ସମସ୍ତଙ୍କ ପାଇଁ ଉତ୍ତମ ଜୀବନ ଯାପନ ଆଡ଼କୁ ମୁହାଁଇବା ଦରକାର ।

## ୧୩. ଏକ ସମ୍ଭାବନା/ବିକଳ୍ପ

ଆମେ ସମସ୍ତଙ୍କ ପାଇଁ ଉତ୍ତମ ଜୀବନ କେମିତି ଆଶା କରିପାରିବା ? ଆମେ ଏଥିପାଇଁ ଏକ ବିକଳ୍ପ ତିଆରି କରିପାରିବା ? ଉତ୍ତମ ଜୀବନ ଯାପନ କଥାକହିଲେ ଏଠି ତିନୋଟି କଥା ଉପରେ ଗୁରୁତ୍ୱ ଦିଆଯିବା ଦରକାର: ସାମର୍ଥ୍ୟ, ସମାନତା ଓ ପରିପୋଷଣ । ନିଯୁକ୍ତି, ଶିକ୍ଷା ଓ ସଂସ୍କୃତି, ଗଣତନ୍ତ୍ରରେ ଅଂଶ ଗ୍ରହଣ ଏସବୁ ହେଉଛି ଲକ୍ଷ୍ୟ । ଉତ୍ପାଦନ ପ୍ରକ୍ରିୟାରେ ଆତ୍ମ ନିର୍ଭରଶୀଳତା ଏବଂ ମୌଳିକ ଆବଶ୍ୟକତାକୁ ପୂରଣ କରିପାରୁଥିବା ଭଳି ନୀତି ପ୍ରଣୟନ ହେବା ଦରକାର ତାହାକି ଭବିଷ୍ୟତର ସୁରକ୍ଷା ମଧ୍ୟ କରୁଥିବ ।

ବିଶେଷ କରି ଗାଁ ଗହଳର ଦରିଦ୍ର ଲୋକଙ୍କୁ ଜୀବନ ଧାରଣର ମାନକୁ ଉନ୍ନତି କରିବାକୁ ହେଲେ ଆମକୁ କୃଷିର ଅଭିବୃଦ୍ଧି ଉପରେ ଯୋର ଦିଆଯିବା ଦରାକାର । ଗାଁ ଗହଳରେ ପିଇବା ପାଣି, ସ୍ୱାସ୍ଥ୍ୟ, ପରିମଳ ଏବଂ ସାର୍ବଜନୀନ ପ୍ରାଥମିକ ଶିକ୍ଷାପ୍ରତି ମଧ୍ୟ ସମାନଭବ ଗୁରୁତ୍ୱ ଦିଆଯିବା ଆବଶ୍ୟକ । ସାକ୍ଷରତା ଅଭିଯାନରୁଆମକୁ ଏହି ଶିକ୍ଷା ମିଳିଛି ଯେ ସମସ୍ତ କାର୍ଯ୍ୟକ୍ରମ ସଫଳ ହୋଇ-ପାରିବ ଯଦି ଲୋକଙ୍କ ଅଂଶ ଗ୍ରହଣ ଦ୍ୱାରହିଁ ସମସ୍ତ କଥାକୁ ସେମାନଙ୍କ ନିକଟରେ ପହଞ୍ଚାଇ ଦିଆଯାଇ ପାରିବ ।

ଆମର ଅବସ୍ଥାର ପରିବର୍ତ୍ତନ କରିବାକୁ ହେଲେ ଆମେ ଏଇକ୍ଷଣି ଓ ଏଠି ହିଁ କାମ ଆରମ୍ଭ କରିବା ଦରକାର । ଏବେ ଆମେ ରାଜନୈତିକ କାର୍ଯ୍ୟକଳାପରେ ଏଭଳି ଅଂଶ ଗ୍ରହଣ ତାହାକୁ ବଦଳାଇବାକୁ ହେବ । ଯେଉଁ ରାଜନୀତି ଆମକୁ ସାମାଜିକ ଓ ସାଂସ୍କୃତିକ ପ୍ରକ୍ରିୟାଠାରୁ ଦୂରେଇଦେଇଛି ତାହାକୁ ହଟାଇଦେବା ଦରକାର । ଆମର ବିଶ୍ୱାସ ଯେ ଏହିଭଳି ନୂଆ ରାଜନୈତିକ କାର୍ଯ୍ୟକଳାପ ସୁପ୍ତ ମଣିଷକୁ ଜାଗ୍ରତ କରିବ ଏବଂ ଦାରିଦ୍ର୍ୟ ସଂପନ୍ନ ଲୋକଙ୍କ ଦ୍ୱାରା ଏକ ଆନ୍ଦୋ-ଳନକୁ ତେଜେଇବା, ଯେଉଁ ମାନେ ଏକ ଆତ୍ମନିର୍ଭରଶୀଳ ଭରତର ସ୍ୱପ୍ନ ଦେଖିଛନ୍ତି ସେମାନଙ୍କଠାରେ ଥିବା ଜୀବନଶକ୍ତିକୁ ଆମକୁ ତେଜେଇବାକୁ ହେବ । ଅନାହାର ଅଜ୍ଞତା, ଅସ୍ୱାସ୍ଥ୍ୟ, ଦାରିଦ୍ର୍ୟ ଓ ନିର୍ଭରଶୀଳତାରୁ ମୁକ୍ତି ପାଇବାକୁ ହେଲେ ଆମକୁ ଏକାଠି ହେବାକୁ ପଡ଼ିବ ।

—0—

# ଲୋକଙ୍କ ହାତରେ କ୍ଷମତା

ହମାରା ଦେଶ



## ଆଲୋଚନା ମାଳା

ପ୍ରସ୍ତୁତି :-
ସର୍ବଭାରତୀୟ ଜନ ବିଜ୍ଞାନ ସଂଗଠନ
ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା
ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର - ୭୫୧ ୦୦୩

# ଲୋକଙ୍କହାତରେ କ୍ଷମତା
## (ଆମ ଗଣତନ୍ତ୍ର)

ଗଣତନ୍ତ୍ର ସ୍ଲୋଗାନ୍ ସମସ୍ତେ ଦିଅନ୍ତି, କୌଣସି ରାଜନୈତିକ ଦଳ, କୌଣସି ସାମାଜିକ ସଂସ୍ଥା ଖୋଲା ଖୋଲି ଭାବେ ଏହାର ବିରୋଧ କରନ୍ତି ନାହିଁ । କିନ୍ତୁ ବିଭିନ୍ନ ଲୋକ ବିଭିନ୍ନ ଭାବରେ ଏହାକୁ ବୁଝିଥାନ୍ତି । ପୁରାତନ ଗ୍ରୀସରେ ଏହାକୁ ନାଗରିକମାନଙ୍କର ଗଣତନ୍ତ୍ର କହିଲେଣି ତ ଇଂଲଣ୍ଡରେ ପୁରୁଷମାନଙ୍କର ଗଣତନ୍ତ୍ର କୁହାଯାଉଥିଲା । ସାମ୍ୟବାଦୀ ରାଷ୍ଟ୍ରମାନେ ଗୋଟିଏ ପାଟିର ଗଣତନ୍ତ୍ର ବୋଲି ମଧ୍ୟ କହୁଛନ୍ତି । ପାକିସ୍ଥାନରେ କୁହାଯାଉଥିଲା "ମୌଳିକ ଗଣତନ୍ତ୍ର "ଆଶ୍ଚର୍ଯ୍ୟର କଥା, ଆମେ ଏ ସବୁ ଗୁଡ଼ିକୁ ଗଣତନ୍ତ୍ର ବୋଲି କହୁ । କୁହାଯାଏ ଯେ ଗଣତନ୍ତ୍ର ହେଉଛି ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଓ ଲୋକମାନଙ୍କ ପାଇଁ ଶାସନ । ପୁଣି ଭାରତକୁ ପୃଥିବୀର ସର୍ବବୃହତ୍ ଗଣତନ୍ତ୍ର ବୋଲି କୁହାଯାଏ । ବାସ୍ତବ କ୍ଷେତ୍ରରେ ଏହି ସର୍ବବୃହତ୍ ଗଣତନ୍ତ୍ର ରେ ଶାସନ ଲୋକମାନଙ୍କ ଦ୍ୱାରା ବା ଲୋକମାନଙ୍କ ପାଇଁ ହେଉନାହିଁ, କାରଣ ଆମେ ଦେଖୁଛୁ ଯେ ଅତି ଅଳ୍ପସଂଖ୍ୟକ ଲୋକ ହିଁ ଶାସନର ସବୁ ବିଷୟ ସ୍ଥିର କରିଥାନ୍ତି । ଦେଶ ଶାସନରେ ଆମ ସମସ୍ତଙ୍କର କ'ଣ ଅଧିକାର ଅଛି ? ଆମ ସମସ୍ତଙ୍କର ଗୋଟିଏ ମାତ୍ର ଅଧିକାର ରହିଛି ତାହା ହେଲା ଭୋଟଦାନର ଅଧିକାର । ଏହି ଅଧିକାର ଦ୍ୱାରା ଅତି ଅଳ୍ପସଂଖ୍ୟକ ଲୋକ ଶାସନ ପରିଚାଳନାର ଦାୟିତ୍ୱ ଗ୍ରହଣ କରନ୍ତି । ତା'ଛଡ଼ା ସ୍ୱାଧୀନତାର ୪୫ ବର୍ଷପରେ ବି ଆମଦେଶରେ ଅର୍ଦ୍ଧେକ ଲୋକ ନିରକ୍ଷର । ଏଭଳି ଅବସ୍ଥାରେ ଭାରତ ବର୍ଷରେ ଭୋଟ ଦେବା ଅଧିକାରର ଗୁରୁତ୍ୱ କେତେ ଲୋକ ବା ବୁଝିଛନ୍ତି ?

ଭାରତରେ ଆମେ ଦେଖୁଛୁ ଯେ ଅଳ୍ପ ଲୋକ ଅଧିକରୁ ଅଧିକ ଧନୀ ହେବାରେ ଲାଗିଛନ୍ତି । ଅଧିକ ସଂଖ୍ୟକ ଲୋକ ଦାରିଦ୍ର୍ୟରେ କାଳ କାଟୁଛନ୍ତି । ଏହି ସଂଖ୍ୟା ଗରିଷ୍ଠ ଲୋକମାନେ ନିଜର ଅଧିକାର ବିଷୟରେ ସଚେତନ ହୋଇନଥିବାରୁ ଭୋଟ ଦାନର ଗୁରୁତ୍ୱ ବୁଝିପାରୁନାହାଁନ୍ତି ତେଣୁ ନିର୍ବାଚନରେ ଲଢୁଥିବା ଲୋକମାନେ ଏମାନଙ୍କୁ ସମାନ୍ୟ ସାମାନ୍ୟ କଥାରେ ପ୍ରଭାବିତ କରୁଛନ୍ତି । ଭୋଟ କିଣା ହେଉଛି, ନିର୍ବାଚନ ସମୟରେ ହିଂସା, ଜାଲିଆତି ବଢ଼ି ଚାଲିଛି । ଯେଉଁ ପ୍ରତିନିଧିମାନେ ନିର୍ବାଚିତ ହେଉଛନ୍ତି ସେମାନେ ଲୋକମାନଙ୍କ ପାଖରେ ସେମାନଙ୍କ ପ୍ରତିଶ୍ରୁତି ରଖୁନାହାଁନ୍ତି । ଭୋଟ ଦେଲାପରେ ପ୍ରତିନିଧିମାନଙ୍କୁ କ୍ଷମତାରୁ ଓହରାଇ ଆଣିବାପାଇଁ ଲୋକମାନଙ୍କ ପାଖରେ ଆଉ କୌଣସି ଉପାୟ ନାହିଁ ।

ଗଣତନ୍ତ୍ର ଶାସନରେ ସମାଜରେ ପ୍ରତ୍ୟେକ ଲୋକ ସମାନଭାବେ ଭାଗନେବା ଉଚିତ୍ । ଉତ୍ପାଦନ କ୍ଷେତ୍ରରେ ହେଉ ବା ଚାକିରୀ ବା ଯେ କୌଣସି କର୍ମସଂସ୍ଥାନ ଦୃଷ୍ଟିରୁ ହେଉ ପ୍ରତିଲୋକ ସମାନଭାବେ ଭାଗ ନେବା ଉଚିତ୍ କିନ୍ତୁ ଏ ପର୍ଯ୍ୟନ୍ତ ଚାଲିଥିବା ଗଣତନ୍ତ୍ରର ଶାସନରେ ସେ ସୁଯୋଗ ଆସିପାରିନି । ବର୍ତ୍ତମାନ ବିଶ୍ୱରେ ପ୍ରକୃତ ଗଣତନ୍ତ୍ର ଉପଲବ୍ଧି ପାଇଁ ସମୟ ଏବଂ ସୁଯୋଗ ଆସିଛି । କିନ୍ତୁ କେତେକ ବ୍ୟକ୍ତି ବିଶେଷ ଏହା କରାଇ ଦେଉନାହାଁନ୍ତି, ତେଣୁ ଚାଲିଥିବା ଗଣତନ୍ତ୍ର ବ୍ୟବସ୍ଥା ଲୋକମାନଙ୍କ ଦ୍ୱାରା ଶାସନ ନହୋଇ ଲୋକମାନଙ୍କ ଉପରେ ଲଦିଦିଆ ହେଉଛି । ମୁଷ୍ଟିମେୟ ଲୋକ ଅଧିକାଂଶ ଲୋକମାନଙ୍କ ଉପରେ ଶାସନ କରୁଛନ୍ତି । ଧନୀ ଗରୀବଙ୍କୁ ଶାସନ କରୁଛି । ତେଣୁ ଦେଶ ଶାସନରେ ଲୋକମାନଙ୍କ ଭାଗନେବାର ସଂଖ୍ୟା ବଢ଼ିବା ପରିବର୍ତ୍ତେ କମିବାରେ ଲାଗିଛି । ଲୋକମାନେ କେବଳ ସାମାଜିକ ପ୍ରକ୍ରିୟାରେ ଭାଗନେବାରୁ ବଞ୍ଚିତ ହେଉନାହାଁନ୍ତି ସେମାନେ ନିଜ ଜୀବନ ଉପରେ ମଧ୍ୟ ନିୟନ୍ତ୍ରଣ ହରାଉଛନ୍ତି । ବ୍ୟକ୍ତି ନିଜକୁ ନିଃସହାୟ ମନେକରୁଛି । ଆଞ୍ଚଳିକ ଭାବରେ ମଧ୍ୟ ସେହି ଅସହାୟତା ପ୍ରକାଶ ପାଇଛି । ଏପରିକି ବଡ଼ ବଡ଼ ଦେଶମାନେ ମଧ୍ୟ ଅସହାୟତା ଅନୁଭବ କରୁଛନ୍ତି । ଏମାନେ ସମସ୍ତେ କିଛି ବିଶ୍ୱଶକ୍ତିଙ୍କ ପାଖରେ ଦାସ ହୋଇ ଯାଇଛନ୍ତି । ଏହି ପରିପ୍ରେକ୍ଷୀରେ "ଲୋକଙ୍କ ହାତରେ କ୍ଷମତା" ଏହି ସ୍ଲୋଗାନ ଯେତେ ଶ୍ରୁତି ମଧୁର ହେଲେ ହେଁ ବାସ୍ତବରେ ତାର କିଛି ମୂଲ୍ୟ ନାହିଁ ।

ସାମୂହିକ ଚିନ୍ତା ଏବଂ ସାମୂହିକ କାର୍ଯ୍ୟ ହେଉଛି ମନୁଷ୍ୟ ସ୍ଥିତିର ଭିତ୍ତିଭୂମି, ଏବେ ସମଷ୍ଟିଗତ ଭାବର ଅଭାବ ଦେଖାଯାଉଛି । ଚିନ୍ତା କରିବାର ଶକ୍ତି ସତେ ଯେମିତି ଲୋପ ପାଉଛି । ଯେତେବେଳେ ମାନବ ସମାଜର ଜ୍ଞାନ ଲୋପ ପାଇଯାଏ ସେତେବେଳେ ଧ୍ୱଂସ ଆଡ଼କୁ ସେ ଆଗେଇ ଚାଲେ । ମାନବ ଜାତି ବର୍ତ୍ତମାନ ଦୋଛକିରେ ପହଞ୍ଚିଛି । ଗୋଟିଏ ରାସ୍ତାରେ ଗଲେ ସେ ନର୍କରେ ପହଞ୍ଚିବ ଏବଂ ଅନ୍ୟପଟେ ଗଲେ ସେ ସ୍ୱର୍ଗରେ ପହଞ୍ଚିବ । ତାର ବୁଦ୍ଧି ଓ ବିବେକ କହୁଛି ଦ୍ୱିତୀୟ ରାସ୍ତାରେ ଯିବାକୁ । ମାତ୍ର ଅଭ୍ୟାସର ବଶବର୍ତ୍ତୀହୋଇ ସେ ପ୍ରଥମ ରାସ୍ତାରେ ଯାଉଛି । ମଣିଷ ଜାତି ବହୁତ କିଛି କୃତିତ୍ୱ ହାସଲ କରିପାରିଛି । ସମୟଥିଲା ଯେତେବେଳେ ମଣିଷ ନିଆଁ ଓ ପାଣିକୁ ଡ଼ରି ପୂଜା କରୁଥିଲା । ଏବେ ସେ ଏହି ଧରାର ମାଲିକ ସାଜିଛି । ଚିନ୍ତାକରିବାର ଶକ୍ତିରେ, କର୍ମକରିବାର କୌଶଳରେ ଏବଂ ନିଜର ସାମଗ୍ରିକ ଅନୁଭୂତିକୁ ଭାଷାରେ ପରିପ୍ରକାଶ କରିବାର କଳାରେ ମନୁଷ୍ୟ ପଶୁଠାରୁ ଭିନ୍ନ । ମଣିଷର ଏହିସବୁ ଶକ୍ତି ଏବଂ କୌଶଳ ଗୁଡ଼ିକରୁ ଜନ୍ମନେଇଛି ବିଜ୍ଞାନ, ବୈଷୟିକ ଜ୍ଞାନ ଏବଂ ଅତ୍ୟାଧୁନିକ ସୂଚନା ସଂଗ୍ରହର ବ୍ୟବସ୍ଥା ।

ଖାଇବା , ଅନ୍ୟର ଶିକାର ନହେବା, ବଂଶ ବଢ଼ାଇବା ଏହାହେଉଛି ପଶୁଜୀବନର ସାରତତ୍ତ୍ୱ । ସମୟ ଥିଲା ଯେତେବେଳେ ମଣିଷ ଓ ପଶୁ ମଧ୍ୟରେ ବିଶେଷ ପ୍ରଭେଦ ନଥିଲା । କିନ୍ତୁ ବର୍ତ୍ତମାନର ମଣିଷ ଯଥେଷ୍ଟ ଉପରେ । ବର୍ତ୍ତମାନ ମାନବଜାତି ପ୍ରତ୍ୟକ ମଣିଷକୁ ଯଥେଷ୍ଟ ଖାଦ୍ୟ, ପୋଷାକ, ଆଶ୍ରୟସ୍ଥଳ, ଶିକ୍ଷା ଓ ସ୍ୱାସ୍ଥ୍ୟର ଯତ୍ନ , ଆମୋଦ ପ୍ରମୋଦ ର ବ୍ୟବସ୍ଥା ଓ ବିଶ୍ରାମ ଯୋଗାଇପାରିବ...। ଏ ସବୁ ହାସଲ କରିବାପାଇଁ ତାପାଖରେ ଶକ୍ତି ଅଛି । ଜ୍ଞାନବି ଅଛି, ମାତ୍ର ବିବେକର ଅଭାବ ଦେଖାଦେଇଛି । ଯେଉଁ ଶକ୍ତି ଏହି ଧରାରେ ସ୍ୱର୍ଗ ଗଢ଼ିପାରନ୍ତା ସେହିଶକ୍ତି ତାକୁ ନର୍କରେ ପରିଣତ କରୁଛି । ପୃଥିବୀକୁ ଏପରି ନର୍କକରିବାରେ ଯେଉଁମାନଙ୍କର ଭୂମିକା ବେଶି ସେମାନେ କହୁଛନ୍ତି ବହୁତ ଲୋକସଂଖ୍ୟା ଯୋଗୁ ସବୁ ପ୍ରକାର ସମସ୍ୟା ଉପୁଜୁଛି । ଧନୀ, ଲୋକମାନେ ଭାବୁଛନ୍ତି ଯେ ଗରୀବ ଲୋକଙ୍କୁ ତଡ଼ିଦେଲେ ଯାଇ ଦାରିଦ୍ର୍ୟ ଦୂରୀକରଣ ହୋଇପାରିବ ।

ପ୍ରାକୃତିକ ପଦାର୍ଥ ଯେପରି ଅବସ୍ଥାରେ ଥାଏ, ମଣିଷ ତାହାକୁ ସେହିପରି ଭାବେ ବ୍ୟବହାର କରିପାରେ ନାହିଁ । ସେ ପ୍ରାକୃତିକ ପଦାର୍ଥକୁ ଜିନିଷପତ୍ରରେ ପରିଣତ କରାଏ । ଏହା ମଣିଷର ଶ୍ରମ ବିନିମୟରେ ହୋଇଥାଏ । ଶ୍ରମ ଦୁଇ ପ୍ରକାରର । ଗୋଟିଏ ଶାରୀରିକ ଏବଂ ଅନ୍ୟଟି ମାନସିକ । ଆମେ ଯଦି ମନୁଷ୍ୟ ସମାଜର କ୍ରମ ବିକାଶକୁ ଲକ୍ଷ୍ୟ କରିବୁ , ତେବେ ଦେଖିବୁ ଧୀରେ ଧୀରେ ଦୈହିକ ଶ୍ରମ କମିବାରେ ଏବଂ ମାନସିକ ଶ୍ରମ ବଢ଼ିବାରେ ଲାଗିଛି । ପ୍ରାୟ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଦୈହିକ ଶ୍ରମ ବେଶୀ ଆବଶ୍ୟକ ହେଉଥିଲା । ଏହା ସତଯେ ବିକାଶୋନ୍ମୁଖୀ ରାଷ୍ଟ୍ର ମାନଙ୍କରେ ଏବେବି ଦୈହିକ ଶ୍ରମର ପ୍ରାଧାନ୍ୟ ଅଛି । ଉଦାହରଣ ସ୍ୱରୂପ ଭାରତରେ ଶତକଡ଼ା ୭୫ ଭାଗ ଲୋକ କୃଷି ଏବଂ ଶିଳ୍ପରେ ନିୟୋଜିତ ଅଛନ୍ତି । ଅନ୍ୟାନ୍ୟ ଗ୍ଧକିରୀ କ୍ଷେତ୍ରରେ କେବଳ ଶତକଡ଼ା ୨୫ ଭାଗ ଲୋକ ଅଛନ୍ତି । କିନ୍ତୁ ଆମେରିକା ଭଳି ଶିଳ୍ପୋନ୍ନତ ବିକାଶଗ୍ରସ୍ତ ଦେଶମାନଙ୍କରେ ପରିସ୍ଥିତି ଠିକ୍ ବିପରୀତ । ଏକ ବିଂଶ ଶତାବ୍ଦୀରେ ଉତ୍ପାଦନ ପ୍ରକ୍ରିୟା ଉନବିଂଶ ଶତାବ୍ଦୀଠାରୁ ପୁରାପୁରି ଅଲଗା ହେବ । ଯାନ୍ତ୍ରିକ ମାନବ ଦ୍ୱାରା ପୁରା ପୁରି ପରିଗ୍ଧଳିତ ଉତ୍ପାଦନ ପ୍ରକ୍ରିୟା ଆମ୍ଭେ କଳ୍ପନା କରିପାରିବା । ଅଷ୍ଟାଦଶ ଶତାବ୍ଦୀ ଏବଂ ଉନବିଂଶ ଶତାବ୍ଦୀରେ ସାମ୍ରାଜ୍ୟବାଦୀ ମାନେ ଉପନିବେଶ ଗୁଡ଼ିକର ଶ୍ରମଶକ୍ତି ସାହାଯ୍ୟରେ ସେମାନଙ୍କର ସମ୍ପଦ ଲୁଣ୍ଠନ କରୁଥିଲେ ।

ଏକବିଂଶ ଶତାବ୍ଦୀରେ ସମ୍ରାଜ୍ୟବାଦୀ ମାନଙ୍କ ପାଇଁ ଉପନିବେଶ ଗୁଡ଼ିକର ଶ୍ରମଶକ୍ତିର ଆବଶ୍ୟକତା ରହିବ ନାହିଁ । ଯନ୍ତ୍ର ମାନବ ହିଁ ସେ କାର୍ଯ୍ୟ କରିପାରିବେ । ତେଣୁ ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କ ପାଇଁ ତୃତୀୟ ବିଶ୍ୱର ମଣିଷମାନେ ମୂଲ୍ୟହୀନ ।

ଯେଉଁ ନ୍ୟୁଟ୍ରନ ବୋମା ବାହାର କରାଯାଇଛି ତାହା ଜୀବଜନ୍ତୁଙ୍କୁ ମାରିଦେବ କିନ୍ତୁ ଧନ ସମ୍ପତ୍ତି କିଛି ନଷ୍ଟ କରିବ ନାହିଁ । ଉନ୍ନତ ଦେଶମାନଙ୍କର ଚିନ୍ତାର ଏହା ଏକ ସ୍ପଷ୍ଟ ପ୍ରତିଫଳନ । ଏଥିରୁ ସେମାନଙ୍କର ଅମାନୁଷିକ ଚିନ୍ତା କଥା ଅନୁମାନ କରିହେବ । ବିକାଶ ପ୍ରାପ୍ତ ଦେଶମାନଙ୍କର ଯେଉଁ ରିଓ ସମ୍ମିଳନୀ ହୋଇଥିଲା ସେଥିରେ ଭାରତ, ବଂଗଳାଦେଶ ଏବଂ ଅନ୍ୟାନ୍ୟ ଆଫ୍ରିକୀୟ ଦେଶ ଭଳି ବିକାଶୋନ୍ମୁଖୀ ଦେଶମାନଙ୍କ ପାଇଁ ଆଦୌ ସହାନୁଭୂତି ନାହିଁ ବୋଲି ସ୍ପଷ୍ଟ ହୋଇଯାଇଛି । ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଏବଂ ବିଶ୍ୱ ବ୍ୟାଙ୍କ ଖୋଲା ଖୋଲି ଭାବେ ସେ ପ୍ରକାର ନୀତି ଅନୁସରଣ କରୁଛନ୍ତି ଯେଉଁଥିରେ ଗରୀବ ଲୋକଙ୍କ ପାଇଁ ବଞ୍ଚିବା ମୁସ୍କିଲ ହୋଇଯିବ । ଆମ ସମ୍ମୁଖରେ ଦୁଇଟି ଉପାୟ ଅଛି । ଗୋଟିଏ ହେଲା ବିକାଶ ପ୍ରାପ୍ତ ଦେଶମାନଙ୍କର ଯେଉଁ ଯାନ୍ତ୍ରିକରଣର ଅଭିଯାନ ଚାଲିଛି ତାକୁ ଗ୍ରହଣ କରି ନେଇ ଧ୍ୱଂସକୁ ନିମନ୍ତ୍ରଣ କରିବା ଏବଂ ଅନ୍ୟଟି ହେଲା ଏହାକୁ ପ୍ରତିରୋଧ କରିବା । ବିକାଶ ପ୍ରାପ୍ତ ଦେଶମାନେ ବିକାଶ ପାଇଁ ଯେଉଁ ନୀତି ଅନୁସରଣ କରୁଛନ୍ତି ତାହା ସେମାନେ ଅଧିକ ଦିନ ପାଇଁ କରିପାରିବେ ନାହିଁ । ସେମାନେ ସେମାନଙ୍କର ବିକାଶର ମାର୍ଗ ବଜାୟ ରଖିପାରିବେ ନାହିଁ ।

### ପୁଞ୍ଜିବାଦ ଓ ସାମ୍ୟବାଦ :

ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କରେ ସବୁରି ମୂଳରେ ଥାଏ ବ୍ୟକ୍ତିଗତ ଲାଭର ବିଚାର । ଉତ୍ପାଦନ କ୍ଷେତ୍ରରେ ହେଉ ବା ଚାକିରୀ କ୍ଷେତ୍ରରେ ହେଉ ସେ ସବୁର ବିନିମୟରେ କେତେ ଲାଭ ମିଳିବ ତାହା ହିଁ ଏମାନଙ୍କର ମୁଖ୍ୟ କଥା । ତେଣୁ ଯେକୌଣସି ପ୍ରକାରରେ ଉତ୍ପାଦନ ବଢ଼ାଇ ଲାଭ ଉଠାଇ ପାରିଲେ ଯାଇ ପୁଞ୍ଜିବାଦ ବ୍ୟବସ୍ଥା ତିଷ୍ଠିପାରିବ । ଏହି ଲକ୍ଷ୍ୟ ଯୋଗୁଁ ଉତ୍ପାଦନ କିଭଳି ଜ୍ୟାମିତିକ ହାରରେ ବଢ଼ି ପାରିବ ତାହାହିଁ ଏମାନେ ଦେଖିଥାନ୍ତି । କିନ୍ତୁ ଏହି ଢାଞ୍ଚାର ଉତ୍ପାଦନ ପଦ୍ଧତି ନିହାତି ଭାବେ ବେଶିଦିନ ଧରି ଚାଲିପାରିବ ନାହିଁ ବା ତିଷ୍ଠିରହିପାରିବନି । ଅନ୍ୟପକ୍ଷରେ ସମାୟବାଦୀ ରାଷ୍ଟ୍ରମାନେ ଯେଉଁ ବିକାଶର ମାର୍ଗ ବାଛିଥିଲେ ତାହା ମଧ୍ୟ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ବିକାଶର ଧାରାଠାରୁ ପ୍ରାୟତଃ ଅଲଗା ନଥିଲା, ତେଣୁ ସେମାନେ ଶେଷରେ ସାମ୍ୟବାଦୀ ହୋଇ ରହିପାରିଲେ ନାହିଁ । ବିକାଶ ପ୍ରାପ୍ତ ରାଷ୍ଟ୍ରମାନଙ୍କ ଯୋଗୁଁ ପରିବେଶ ଦୂଷିତ ହେଲା, ସମ୍ପଦ ଅବକ୍ଷୟ ହେଲା, ବାୟୁମଣ୍ଡଳର ଉଷ୍ଣତା ବଢ଼ିଲା, ଓଜୋନ ସ୍ତରରେ ଫାଟ ସୃଷ୍ଟି ହେଲା । ଏହିପରି ଏକ ଭୟାବହ ପରିସ୍ଥିତିରେ ମଧ୍ୟ ବିକାଶପ୍ରାପ୍ତ ଦେଶମାନେ ବିକାଶ ପାଇଁ ଆଉ କୌଣସି ବିକଳ୍ପର ପରିକଳ୍ପନା କରିନାହାଁନ୍ତି ।

ସାମ୍ୟବାଦୀ ରାଷ୍ଟ୍ରମାନେ ପ୍ରଥମରୁ କହୁଥିଲେ ଉତ୍ପାଦନର ଲକ୍ଷ୍ୟ କେବଳ ବିନିମୟ ନୁହେଁ ବରଂ ଏହାର ଲକ୍ଷ୍ୟ ହେଉଛି ଉପଯୋଗ । ସେମାନେ ଶେଷରେ ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ବିନିମୟ କୁ ଅବହେଳା କରି ବା ମାର୍କେଟକୁ ଅବହେଳା କରି କୌଣସି ବିକାଶ କରାଯାଇନପାରେ । ତେଣୁ ସେମାନଙ୍କ ମଧ୍ୟରୁ ଅନେକ ପୁଂଜିବାଦୀ ମାନଙ୍କର ବିକାଶଧାରାକୁ ଅନୁସରଣ କରୁଥିଲେ । ବିକାଶୋନ୍ମୁଖୀ ଦେଶମାନଙ୍କର ସଂପଦକୁ ଲୁଟ୍‌କରିବା ମଧ୍ୟ ଏମାନଙ୍କର ଧର୍ମରେ ପରିଣତ ହେଲା । ସାମ୍ୟବାଦର ଆଦର୍ଶରେ ଅନୁପ୍ରାଣିତ ବ୍ୟକ୍ତିମାନେ ଆଗରୁ ଭାବୁଥିଲେ ଯେ ବିକାଶର ବିକଳ୍ପ ଅଛି କିନ୍ତୁ ସତୁରୀ ବର୍ଷର ପରୀକ୍ଷା ନିରୀକ୍ଷା ପରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ଆଶା ପରିତ୍ୟାଗ କରିଛନ୍ତି । ଏହାର କାରଣ କଅଣ? ଏହା ସତ ଯେ ତିରିଶ ବର୍ଷ ପୂର୍ବେ ପ୍ରାୟ ୧୯୭୦ ମସିହା ସୁଦ୍ଧା ଦାରିଦ୍ର୍ୟ ସୋଭିଏତ୍ ଇଉନିୟନରୁ ଦୂର କରାଯାଇ ପାରିଥିଲା । ସମସ୍ତଙ୍କ ପାଇଁ ଖାଦ୍ୟ ବସ୍ତ୍ର ଓ ଗୃହ ମିଳିପାରିଥିଲା । କାମ କରିବାର ଅଧିକାର, ବିଶ୍ରାମ ପାଇଁ ସମୟ ପାଇବା ଆଦି ସେମାନଙ୍କର ମୌଳିକ ଅଧିକାର ଥିଲା । ବିଜ୍ଞାନ ଓ ବୈଷୟିକ ଜ୍ଞାନ ବହୁତ ଶୀଘ୍ର ବଢ଼ିଚାଲିଥିଲା । ୧୯୫୭ରେ ସ୍ପୁଟନିକ ପ୍ରେରଣ ଓ ୧୯୬୨ରେ ମଣିଷ ଚାଳିତ ମହାକାଶଯାନ ପ୍ରେରଣ ସୂଚାଇ ଦେଇଥିଲା ଯେ ସେମାନେ ଯୁକ୍ତରାଷ୍ଟ୍ର ଆମେରିକା ଠାରୁ ମଧ୍ୟ ଅଧିକ ଉନ୍ନତ । ସେ ଦେଶରେ ପିଲାମାନଙ୍କର ଯତ୍ନ ଏପରି ନିଆଯାଉଥିଲା ଯେ ସେମାନଙ୍କ ପ୍ରତି ଅନ୍ୟମାନେ ଇର୍ଷାନ୍ୱିତ ହୋଇଯାଉଥିଲେ । ତାହା ଏକ ଭୂସ୍ୱର୍ଗ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ସେହି ଭୂସ୍ୱର୍ଗ ନଷ୍ଟ ହୋଇଗଲା, ଦାରିଦ୍ର୍ୟ, କ୍ଷୁଧା, ବେକାରୀ- ଏସବୁ ବଢ଼ିବାରେ ଲାଗିଲା । ପୁଞ୍ଜିବାଦର ସବୁ ଦୁର୍ବ୍ୟବସ୍ଥା ଏଠାରେ ଦେଖାଦେଲା ଏସବୁ । କାହିଁକି ହେଲା ?

କମ୍ୟୁନିଷ୍ଟ ପାର୍ଟି ଲୋକ ମାନଙ୍କଠାରୁ ଦୂରେଇ ଗଲା । ସାଧାରଣ ଲୋକେ ଦେଖିଲେ ଯେ ଦଳର ସଦସ୍ୟମାନେ ବିଶେଷ ସୁବିଧା ସୁଯୋଗ ଉପଭୋଗ କରୁଛନ୍ତି ।

ଯୁକ୍ତରାଷ୍ଟ୍ରରେ ଉପଭୋକ୍ତା ଦ୍ରବ୍ୟ ପାଇଁ ପ୍ରବଳ ଆଗ୍ରହ ପ୍ରକାଶ ପାଇଥିଲା । ଯୁକ୍ତ ରାଷ୍ଟ୍ର ସହ ସମ କକ୍ଷ ଦେବା ଏବଂ ତାକୁ ଟପିବା (ଏପରିକି ଉପଭୋକ୍ତା ସାମଗ୍ରୀରେ ମଧ୍ୟ) ବିକାଶର ମୂଳଲକ୍ଷ୍ୟ ହୋଇଥିଲା ସେମାନଙ୍କର ଉତ୍ପାଦନର ପଦ୍ଧତି ଅଲଗା ଥିଲା । କିନ୍ତୁ ବିକାଶର ଅଭିମୁଖ୍ୟ ଅଲଗା ନଥିଲା ।

ସରକାରୀ ଅମଲାତନ୍ତ୍ର ଆସ୍ତେ ଆସ୍ତେ ଆଳସ୍ୟ ପରାୟଣ ହେଉଥିଲା ପ୍ରତିବନ୍ଧକ ସୃଷ୍ଟି କରୁଥିଲା ।

ଗବେଷଣା ଅନୁଷ୍ଠାନ ଏବଂ ସରକାରୀ କାର୍ଯ୍ୟାଳୟଗୁଡ଼ିକର ଅବକ୍ଷୟ ଘଟୁଥିଲା । ଡ଼ଲାର ପାଇଁ କଳା ବଜାର, ମଦ୍ୟପାନ, ବେଶ୍ୟାବୃତ୍ତି ଇତ୍ୟାଦି ଦେଖାଦେଲା ।

ବାଲଟିକ୍ ସାଧାରଣତନ୍ତ୍ର (ଆର୍ମେନିଆ, ଜର୍ଜିଆ) ମାନଙ୍କରେ ଜାତିଗତ ବିବାଦ କୁହୁଳୁଥିଲା । ଋଷିଆରେ ଦାମ୍ଭିକତା, ଅସହିଷ୍ଣୁତା ଆଦି ଅନ୍ୟ ଜାତିର ଲୋକମାନଙ୍କ ପାଇଁ ଆହ୍ୱାନଥିଲା ।

ଦଳ ଭିତରେ ଓ ବାହାରେ ଅଗଣତାନ୍ତ୍ରିକ ମନୋଭାବଥିଲା । ମାର୍କସିଜିମ୍ ଦର୍ଶନ ସୋଭିଏତ ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କମଧ୍ୟରେ ଅପ୍ରିୟହେବାରେ ଲାଗିଥିଲା । ସେମାନଙ୍କପାଇଁ ଏହା ବାଧ୍ୟତା ମୂଳକ ବିଷୟ ଥିଲା । ସେମାନେ ସେଥିରେ ଭଲ ନମ୍ବର ରଖିବା ପାଇଁ ଚେଷ୍ଟାକରୁନଥିଲେ । ପାଶ୍ କରିଗଲେ ସନ୍ତୁଷ୍ଟ ହୋଇଯାଉଥିଲେ । ଏସବୁର କାରଣ କଣ ହୋଇପାରେ ? ଲୋକମାନେ ଏହି ସମାଜ ତଥା ସମାଜିକ ପଦ୍ଧତିକୁ ସୃଷ୍ଟିକରିବାରେ ଗଠନ ମୂଳକ ଭାବେ ଯୋଗଦେଇନଥିଲେ କିମ୍ବା କେବଳ 'ସର୍ବହରାର । ଏକଛତ୍ରବାଦ' ସ୍ଲୋଗାନ ଏକ ପ୍ରସସ୍ତ ଗଣତାନ୍ତ୍ରିକ ଭିତ୍ତି ଭୂମି ସୃଷ୍ଟିକରିବାରେ ସମର୍ଥ ହୋଇପାରିନଥିଲ କିମ୍ବା ଯୁକ୍ତରାଷ୍ଟ୍ରଆମେରିକାକୁ ପ୍ରତିକ୍ଷେତ୍ରରେ ଅନୁକରଣ କରିବାର ପ୍ରବୃତ୍ତି ଠିକ୍ ନଥିଲା କିମ୍ବା ଏକ ପୁଞ୍ଜିବାଦୀ ସଂସ୍କୃତିର ଘେର ମଧ୍ୟରେ ରହି ସାମ୍ୟବାଦକୁ ଧରି ରଖିବା ସମ୍ଭବହେଲା ନାହିଁ କିମ୍ବା, ଯେଉଁ ଦର୍ଶନ ଉପରେ ଏହା ପ୍ରତିଷ୍ଠିତଥିଲା ବୋଧହୁଏ ଅତି ସଂକୀର୍ଣ୍ଣଥିଲା କିମ୍ବା ଏସବୁ ମିଶି ଏକ ବୃହତ୍ତର କାରଣ ଦଣ୍ଡାୟମାନ ହୋଇଥିଲେ ।

ତେବେ ଆସନ୍ତା କାଲି ପାଇଁ ଏକ ବିକଳ୍ପ ବ୍ୟବସ୍ଥା ଚିନ୍ତାକରିବାକୁ ହେବ । ବର୍ତ୍ତମାନର ଅବସ୍ଥା ପୁଞ୍ଜିବାଦୀ ବ୍ୟବସ୍ଥାପାଇଁ ଅନୁକୂଳ । ଏହା ବେଶୀସଂଖ୍ୟାରେ ଲୋକଙ୍କୁ ଦାରିଦ୍ର୍ୟ ମଧ୍ୟକୁ ଠେଲିଦିଏ । ଏହାଠାରୁ ଆଉ ଏକ ଭୟଙ୍କର ବ୍ୟବସ୍ଥା 'ଫାସିବାଦ'' ଏବେ ମୁଣ୍ଡଟେକୁଛି । ମୌଳିକ ବାଦୀ ଶକ୍ତିମାନେ ମଧ୍ୟ ଗଣତନ୍ତ୍ର ପ୍ରତି ପ୍ରକୃତ ବିପଦଭାବେ ଦେଖାଦେଇଛନ୍ତି । ତେଣୁ ପୁଞ୍ଜିବାଦ ଓ ସାମ୍ୟବାଦ ଠାରୁ ଆଉ ଏକ ଉତ୍କୃଷ୍ଟତର ବ୍ୟବସ୍ଥା ଲୋକମାନଙ୍କ ହାତରେ ଦେବାକୁ ହେବ ଯେଉଁଥିରେ କି ଲୋକମାନଙ୍କର ସଂପୂର୍ଣ୍ଣ ଏବଂ ସକ୍ରୀୟ ସହଯୋଗ ଥିବ । ସେଥିପାଇଁ ଲୋକମାନଙ୍କୁ ସମର୍ଥ କରାଇବାକୁ ହେବ । ପ୍ରତ୍ୟେକ ଲୋକପାଇଁ ନିଜର ଜୀବିକା ଅର୍ଜନ କରିବାପାଇଁ ଉପାୟ ଥିବା ଦରକାର । ରାଜନୈତିକ ଅବସ୍ଥା ଏମିତି ହେବା ଦରକାର ଯେଉଁଠି ପ୍ରତିଟି ନାଗରିକ ସକ୍ରିୟଭାବେ ଏବଂ ସଚେତନଭାବେ ରାଜନୀତିକ ବ୍ୟବସ୍ଥାରେ ଭାଗନେଇ ପାରିବେ ।

କେବଳ ଏକ ସକ୍ରୀୟ ରାଜନୈତିକ ବ୍ୟବସ୍ଥା ସୃଷ୍ଟିକଲେ ମଧ୍ୟ ଚଳିବ ନାହିଁ । ତାପଛରେ ଥିବା ଆଦର୍ଶଗତ ଦିଗଟିକୁ ମଧ୍ୟ ଦେଖିବାକୁ ପଡ଼ିବ । ପୁଞ୍ଜିବାଦୀ ବ୍ୟବସ୍ଥାର ଦର୍ଶନ ବା ଆଦର୍ଶହେଲା ଉତ୍ପାଦନକୁ ବଢ଼ାଇ ତାର ବିନିମୟରେ ପ୍ରଚୁର ଲାଭ ଉଠାଇବା । ସାମ୍ୟବାଦୀ ମାନେ ଯଥାର୍ଥରେ କହିନ୍ତିଯେ ଉତ୍ପାଦନର ଲକ୍ଷ୍ୟ କେବଳ ଲାଭ ନୁହେଁ ବରଂ ଦ୍ରବ୍ୟର ଉପଯୋଗ ହେଉଛି ପ୍ରକୃତ ଲକ୍ଷ୍ୟ । କିନ୍ତୁ ସେମାନେ ପଗ୍ଚରନ୍ତି ନାହିଁ ଏହି ଉପଯୋଗର ଉଦ୍ଦେଶ୍ୟ କଣ ? ସେମାନେ ଭାବନ୍ତି କେବଳ ଉତ୍ପାଦନ ବଢ଼ାଇ ଦ୍ରବ୍ୟ ସବୁ ଲୋକମାନଙ୍କପାଖରେ ପହଞ୍ଚାଇବା ଓ ତାହା ଲୋକମାନଙ୍କ ଦ୍ୱାରା ବ୍ୟବହୃତ ହେବା ହିଁ ଉତ୍ପାଦନର ଲକ୍ଷ୍ୟ । ସେମାନେ ଭାବିପାରିଲେ ନାହିଁ ଯଦି ବିଭିନ୍ନ ଦ୍ରବ୍ୟ ଓ କାମର କେବଳ "ବ୍ୟବହାରିକ ମୂଲ୍ୟ" ଥିବ ମାତ୍ର ସାମୁହିକ କଲ୍ୟାଣପାଇଁ ମୂଲ୍ୟନଥିବ ତେବେ ସେଥିରେ ବିଶେଷ କିଛି ଲାଭ ନାହିଁ । ପୃଥିବୀର ସବୁ ଲୋକ ଯଦି କୋଇଲା , ତେଲ, ଇସ୍ପାତ, କାଗଜ ଇତ୍ୟାଦି ଯୁକ୍ତରାଷ୍ଟ୍ର ନାଗରିକମାନଙ୍କଭଳି ଅଧିକ ପରିମାଣରେ ବ୍ୟବହାର କନ୍ତେ ତେବେ ପ୍ରଗତିର ସମ୍ଭାବନା ବହୁତ ଆଗରୁ ବାଧା ପ୍ରାପ୍ତ ହୋଇଯିବ । ତେଣୁ ଆହୁରି ଏକ ଅର୍ଥ ପୂର୍ଣ୍ଣ ଉଦ୍ଦେଶ୍ୟ ଅଛି । ସେହି ଉଦ୍ଦେଶ୍ୟକୁ ହାସଲ କରିବା ପାଇଁ ଏକ ଉତ୍ତମ ପନ୍ଥା ଆମକୁ ଖୋଜି ବାହାର କରିବାକୁ ପଡ଼ିବ ।

ମାନବ ସଭ୍ୟତାର ଭିତ୍ତି ଭୂମି ହେଲା ଉତ୍ପାଦନକ୍ଷମ ଶ୍ରମ । ଉତ୍ପାଦନ ହୁଏ ଉପଯୋଗ ବା ବ୍ୟବହାର ପାଇଁ । ଆମେ କଣ ଜୀବନର ମାନ ବୃଦ୍ଧିକୁ ଉପଯୋଗର ଲକ୍ଷ୍ୟବୋଲି କହିପାରିବୁନାହିଁ ? ଏମିତିକି ଜୀବନର ମାନ ନିର୍ଦ୍ଧାରଣ କଲାବେଳେ କିଏ କେତେ ବସ୍ତୁ ଉପଯୋଗ କରୁଛି ତାହା ବିଗ୍ଚରକୁ ନିଆଯାଇଥାଏ । ଏହ ଆଦୌ ଠିକ୍ ନୁହେଁ , ଜୀବନର ମାନ ଏବଂ ଉପଭୋଗ ମଧ୍ୟରେ କି ସମ୍ପର୍କରହିଛି ତାହା ଆଲୋଚନା କରାଯାଇନାହିଁ । ଏବେ ସମୟ ଆସିଛି ଜୀବନର ମାନକୁ ବସ୍ତୁର ଉପଭୋଗଠାରୁ ଅଲଗା କରି ବିଗ୍ଚରକରିବାକୁ ହେବ ।

ଜୀବନର ଦୁଇଟି ମୂଖ୍ୟ ଗୁଣ ହେଲା ବଂଶ ବୃଦ୍ଧି କରିବା ଏବଂ ମୃତ୍ୟୁକୁ ପ୍ରତିରୋଧକରିବା । ବଂଶ ବୃଦ୍ଧି ଯୋଗୁଁ ବେଳେ ବେଳେ ମୃତ୍ୟୁକୁ ପ୍ରତିରୋଧକରିବାରେ ଅସୁବିଧାହୋଇଥାଏ । ଆମେ ଜାଣିଛୁ ବହୁଜାତି , ଶ୍ରେଣୀର ଜୀବ ଜନ୍ତୁ ଲୋପ ହୋଇଛନ୍ତି, ସେମାନଙ୍କର ଅତ୍ୟଧିକ ସଂଖ୍ୟା ବୃଦ୍ଧି ଯୋଗୁଁ । ମଣିଷ ଏ ବିଷୟରେ ଚିନ୍ତା କରିପାରିବ ଏବଂ ଏହା ରୋକିବା ପାଇଁ କିଛି ଉପାୟ ଅବଲମ୍ବନ କରିପାରିବ । ତେଣୁ କହିହେବ ଯେ ଆୟୁଷ ବୃଦ୍ଧି ଜୀବନର ମାନ ବୃଦ୍ଧିପାଇଁ ସହାୟକ । ଲୋକମାନେ ଏପରି ସ୍ୱାସ୍ଥ୍ୟବାନ୍ ହେବା ଆବଶ୍ୟକ, ଯଦ୍ଦ୍ୱାରା ସେମାନେ ସବୁ ପ୍ରକାରର କାର୍ଯ୍ୟରେ ଭାଗନେଇ ପାରିବେ । ମଣିଷର ଶାରୀରିକ ସ୍ଥିତିଛଡ଼ା ଆହୁରି କିଛି ଅଧିକ ଅଛି । ଯାହାକୁ ଆମେ

ଆଧ୍ୟାତ୍ମିକ  କିମ୍ବା ସାଂସ୍କୃତିକ ସ୍ଥିତି କହିପାରୁ । ଏହାକୁ ଅସ୍ୱୀକାର କରିବା ଅର୍ଥ ମନୁଷ୍ୟତାକୁ ଅସ୍ୱୀକାର କରିବା ସଙ୍ଗେ ସମାନ । ତେଣୁ ଜୀବନରେ ଶାରୀରିକ ଏବଂ ଆଧ୍ୟାତ୍ମିକ ମାନର କ୍ରମବୃଦ୍ଧି ଏବଂ ସଂଖ୍ୟାଲଘୁ ସମେତ ସମସ୍ତେ ଏହାକୁ ଉପଲବ୍ଧୀ କରିବା, ଉତ୍ପାଦନ ଓ ଉପଯୋଗର ଲକ୍ଷ୍ୟହେବା ଉଚିତ୍ ।

ଜୀବନର ଶାରୀରିକ ମାନବୃଦ୍ଧି କିଛି ଉପାଦାନକୁ ନେଇ ସମ୍ଭବ । ବଞ୍ଚିବାକାଳ ଯେତେ ବେଶୀହେବ ଭଲ । କିନ୍ତୁ ଏଥିପାଇଁ ଶରୀର ବି କିଛି ସୀମା ଅଛି । ୭୦-୭୫ ବର୍ଷ ଜଣେ ବଞ୍ଚିପାରିଲେ ବହୁତ ଭଲ ହେବ । କିନ୍ତୁ ପ୍ରାକୃତିକ ସଂପଦକୁ ପୁନଃ ନବୀକରଣ କରାଯାଇପାରିବ ନାହିଁ । ଏଥିପାଇଁ ଏସବୁକୁ ଯେତେ କମ୍ ବ୍ୟବହାର କରାଯିବ ସେତେ ଭଲ । ଅଧିକ ବର୍ଷ ବଞ୍ଚିବାପାଇଁ ଲକ୍ଷ୍ୟ ଥିଲେ ପ୍ରାକୃତିକ ସଂପଦର ବ୍ୟବହାରକୁ ହ୍ରାସ କରାଇବା ପାଇଁ ଚେଷ୍ଟାକରିବା ଅତ୍ୟନ୍ତ ମଙ୍ଗଳଦାୟକ । କ୍ଳେଶଦାୟକ ଶାରୀରିକ ପରିଶ୍ରମ ହ୍ରାସ ହେଲେ ସାଂସ୍କୃତିକ ଜୀବନ ଉପଭୋଗ କରିବାପାଇଁ ଅଧିକ ଅବସର ସମୟ ମିଳିପାରିବ ।

ଜୀବନର ଆଧ୍ୟାତ୍ମିକ ମାନ ବୃଦ୍ଧିପାଇଁ ଆତ୍ମହତ୍ୟା , ହତ୍ୟା ଓ ଦଙ୍ଗା, ଶିଶୁ ଶ୍ରମିକ ନିଶା ସେବନ, ଅସ୍ତ୍ର ଶସ୍ତ୍ର ନିର୍ମାଣ,  ଯୌନ ବ୍ୟାଧି ଆଦି ହ୍ରାସ ହେବା ପାଇଁ ଆବଶ୍ୟକ ।

ସେହିଭଳି ଶିକ୍ଷାର ହାରାହାରି ସ୍ତରର ଉନ୍ନତି ସାଂସ୍କୃତିକ କାର୍ଯ୍ୟକ୍ରମରେ ବେଶୀ ଲୋକଙ୍କ ଭାଗନେବା, ସାମାଜିକ ଉତ୍ପାଦନରେ ମଧ୍ୟ ବେଶୀ ଲୋକଙ୍କ ଅଂଶଗ୍ରହଣ ଏସବୁ ଜୀବନର ଉନ୍ନତ ଆଧ୍ୟାତ୍ମିକ ମାନର ସୂଚକ ।

ଗୋଟିଏ ସମାଜର ଭୌତିକ ଓ ଆଧ୍ୟାତ୍ମିକ ଜୀବନର ମାନବୃଦ୍ଧି ପାଇଁ ଦ୍ରବ୍ୟ ଓ ସେବା ଅନ୍ତତଃ କିଛି ପରିମାଣରେ ଉତ୍ପାଦିତ ହେବା ଆବଶ୍ୟକ । ବିକାଶୋନ୍ମୁଖୀ ରାଷ୍ଟ୍ରରେ ଏକ ଉନ୍ନତ ଜୀବନର ମାନ ପାଇଁ ଉତ୍ପାଦନ ବର୍ତ୍ତମାନ ବହୁତ କମ୍, ଏହା ବହୁପରିମାଣରେ ବଢ଼ିବା ଆବଶ୍ୟକ । ଜାପାନ କିମ୍ବା ଯୁକ୍ତରାଷ୍ଟ୍ର କିମ୍ବା ଅନ୍ୟ ଉନ୍ନତ ରାଷ୍ଟ୍ରମାନଙ୍କ ଭଳି ଉତ୍ପାଦନର ଏତେ  ପରିମାଣର ଆବଶ୍ୟକ୍ୟ ନୁହେଁ । ସେମାନେ ସଂପଦ ନଷ୍ଟ କରନ୍ତି । ଯୁଦ୍ଧ ପାଇଁ  ଅସ୍ତ୍ର ଶସ୍ତ୍ର ଉତ୍ପାଦନ ସବୁ ବୃଥାରେ ଯାଏ । ବିକାଶୋନ୍ମୁଖୀ ରାଷ୍ଟ୍ରପାଇଁ ଏହା ଅଯଥା ବୋଝ ହୋଇଯାଏ । ଯୁଦ୍ଧ ନକରିବାକୁ ମଣିଷର ସୁବୁଦ୍ଧି କିମ୍ବା ପ୍ରଜ୍ଞା ଆସି ନାହିଁ । ଏହା ବ୍ୟତୀତ ଆମେ ଯାହା ସବୁ କରିବୁ ତାହା ନିରର୍ଥକ ହେବ । ଆହୁରି ମଧ୍ୟ ଖାଲି ଦ୍ରବ୍ୟ ଓ ସେବାର ଉତ୍ପାଦନ ବୃଦ୍ଧି ଏକ ଉନ୍ନତ ଭୌତିକ ଜୀବନ୍ ପାଇଁ ସହାୟକ ନୁହେଁ । ଅଧିକ ଉତ୍ପାଦିତ ପଦାର୍ଥ ସମାନ ଭାବରେ **ବଣ୍ଟନ କରାଯିବା** ଉଚିତ୍ । ଏହା ସାମ୍ୟବାଦୀ ରାଷ୍ଟ୍ରରେ ପରୀକ୍ଷା କରାଯାଇ ଥିଲା । ଏହା ସଫଳ  ହୋଇଥିଲା ମଧ୍ୟ । କିନ୍ତୁ ଏହାକୁ ବଜାୟରଖି ହେଲା ନାହିଁ । ତେଣୁ ବର୍ତ୍ତମାନ କ'ଣ କରିବାକୁ ହେବ ?

ଉପଯୋଗକୁ କିଛି ମାତ୍ରାରେ ସଂକୁଚିତ କରିବାକୁ ପଡ଼ିବ । ଏହି ସୀମା ବର୍ତ୍ତମାନ ବିକାଶନ୍ମୋଖୀ ରାଷ୍ଟ୍ରମାନଙ୍କରେ ଥିବା ଉପଯୋଗର ହାର ଠାରୁ ଯଥେଷ୍ଟ ଅଧିକ । ଆଦିମ କାଳରେ ଯେତେବେଳେ ମଣିଷ ଖାଦ୍ୟ ସଂଗ୍ରହକରି ବଞ୍ଚୁଥିଲା ସବୁ ମଣିଷ ସମାନ ଭାବରେ ଏହି ପ୍ରକ୍ରୀୟାରେ ଯୋଗଦେଉଥିଲେ । କାଳକ୍ରମେ ବିଜ୍ଞାନ ଏବଂ ବୈଷୟିକ ଜ୍ଞାନ କୌଶଳର ଅଭିବୃଦ୍ଧି ଫଳରେ କୁଟୀରଶିଳ୍ପରୁ ବଡ଼ ଧାରଣର ଶିଳ୍ପ ପ୍ରତିଷ୍ଠା ହେବାରେ ଲାଗିଲା । ଫଳରେ କୁଟୀର ଶିଳ୍ପରେ କାରୀଗରମାନଙ୍କର ନିଜର ଉତ୍ପାଦିତ ବସ୍ତୁ ଉପରେ ଯେଉଁ କର୍ତ୍ତୃତ୍ବ ରହୁଥିଲା ଏଭଳି ବଡ଼ ଧରଣର ଶିଳ୍ପରେ ତାହା ରହିବା ସମ୍ଭବ ହେଲା ନାହିଁ । ଉଦାହରଣସ୍ୱରୂପ ଗୋଟିଏ ବିରାଟ ଇସ୍ପାତ କାରଖାନା ଯାହା ବର୍ଷକୁ ଏକ ଲକ୍ଷ ଟନ୍ ଷ୍ଟିଲ୍ ଉତ୍ପାଦନ କରୁଥିବ ସେଠାରେ କାମ କରୁଥିବା ଜଣେ ଶ୍ରମିକର ବ୍ୟକ୍ତିଗତ ଭାବେ ସେହି ଉତ୍ପାଦନ ଉପରେ କି ଅଧିକାର ରହିପାରିବ ? ସାଧାରଣ ଶିକ୍ଷା , ସ୍ୱାସ୍ଥ୍ୟ , ପରିବହନ, ଗୃହନିର୍ମାଣ ଏବଂ ସହରର ପରିମଳ ବ୍ୟବସ୍ଥା ଏସବୁ କ୍ଷେତ୍ରରେ ସରକାରଙ୍କ ସାହାଯ୍ୟରେ ସବୁ ଟଙ୍କା ଖର୍ଚ୍ଚ ହୁଏ । ସାଧାରଣ ଜନତାର ଏଥିରେ କୌଣସି ସହଯୋଗ ନଥାଏ । ବରଂ ଏହିସବୁ କାମକୁ ଚଳାଇବା ପାଇଁ ବହୁ ସଂଖ୍ୟାରେ ଲୋକଗାଁରୁ ସହରକୁ ଚ୍ଛାଲିଆସନ୍ତି । ତେଣୁ କେବଳ ବୃହଦ୍ ଶିଳ୍ପ ପ୍ରତିଷ୍ଠା କରାନଯାଇ ଯଦି କୁଟୀର ଶିଳ୍ପ ବହୁମାତ୍ରାରେ ପ୍ରତିଷ୍ଠା କରାଯାଇପାରନ୍ତା ତେବେ କ୍ଷୁଦ୍ର କାରୀଗରମାନେ ବିଶେଷ ଭାବେ ଉପକୃତ ହୋଇପାରନ୍ତେ ।

ବିକାଶର ମାର୍ଗକୁ ବଦଳାଇବାକୁ ପଡ଼ିବ । ବିକାଶର ଧାରା ଯେଭଳି ଭାବେ ଅଳ୍ପକିଛି ଲୋକଙ୍କ ଭିତରେ ସୀମାବଦ୍ଧ ହୋଇରହିଛି ତାକୁ ସମସ୍ତଙ୍କ ପାଖରେ ପହଞ୍ଚାଇବାକୁ ପଡ଼ିବ । କ୍ଷୁଦ୍ର ଆକାରର ଉତ୍ପାଦାନଗୁଡ଼ିକୁ ସକ୍ଷମ ଏବଂ ପ୍ରତିଯୋଗୀତାମୂଳକ କରିବାକୁ ପଡ଼ିବ । କ୍ଷୁଦ୍ର କେବଳ ସୁନ୍ଦର ନୁହେଁ - ଏହା ଯେ ଶକ୍ତିଶାଳୀ ତାହା ପ୍ରମାଣିତ କରିବାକୁ ହେବ । ଆଂଚଳିକ ଶିଳ୍ପଗୁଡ଼ିକୁ ବୃହତ୍ ଶିଳ୍ପଗୁଡ଼ିକ ଆଗରେ ପ୍ରତିଷ୍ଠିତ କରିବାକୁ ପଡ଼ିବ । ଆଜିର ବିଜ୍ଞାନ ଏବଂ ବୈଷୟିକ ବିଦ୍ୟା ପାଇଁ ଏହାହିଁ ଏକ ଆହ୍ୱାନ । ଏହିଭଳି କେତେକ ଭିତିଭୂମି ଉପରେ ସଂବିଧାନର ୭୩ ଏବଂ ୭୪ତମ ସଂବିଧାନ ସଂଶୋଧନ ବିଲ୍ ଗୃହୀତ ହୋଇଅଛି । ପଞ୍ଚାୟତ ଓ ମ୍ୟୁନିସିପାଲଟିର କାର୍ଯ୍ୟାବଳୀ ଠିକ୍ ଭାବରେ ହୋଇପାରୁନି ଏବଂ ତାହା କିପରି ଯଥାର୍ଥଭାବେ ହୋଇପାରିବ ତାହାହିଁ ଏହି ସଂଶୋଧିତ ବିଲ୍‌ର ଲକ୍ଷ୍ୟ । ଆଗରୁ ବହୁତ ରାଜ୍ୟରେ ସେ ଅନୁଷ୍ଠାନଗୁଡ଼ିକ ଦୁର୍ବଳ ଏବଂ ଅର୍କମଣ୍ୟ ହୋଇପଡ଼ିଥିଲେ । ଉପଯୁକ୍ତ ବ୍ୟବଧାନରେ ଓ ନିୟମିତ ଭାବରେ ନିର୍ବାଚନ ହେଉନଥିଲା । ଦୁର୍ବଳ ଶ୍ରେଣୀର ଲୋକେ ଯଥା ହରିଜନ, ଗିରିଜନ ଏବଂ ସ୍ତ୍ରୀ ଲୋକମାନେ ଉପଯୁକ୍ତ ପ୍ରତିନିଧିତ୍ୱ

ପାଉନଥିଲେ । ଉପରୋକ୍ତ ସମ୍ବିଧାନ ସଂଶୋଧନରେ ଏ ଅସୁବିଧା ଦୂର କରିବାକୁ ଚେଷ୍ଟା କରାଯାଇଛି । ମହିଳା, ହରିଜନ ଏବଂ ଗିରିଜନଙ୍କୁ ଉପଯୁକ୍ତ ପ୍ରତିନିଧିତ୍ୱ ଦେବାର ବ୍ୟବସ୍ଥା ରହିଛି । ଓଡ଼ିଶାରେ ମଧ୍ୟ ଗ୍ରାମପଞ୍ଚାୟତ ସଂଶୋଧନ ଆଇନ୍ ପ୍ରଣୀତ ହୋଇଛି । ହରିଜନ ଓ ଗିରିଜନ ସଂପ୍ରଦାୟର ମହିଳାମାନଙ୍କ ପାଇଁ ସଂରକ୍ଷିତ ଆସନର ଏକ ତୃତୀୟାଂଶ ଅଂଶ ସଂରକ୍ଷିତ ହେବାର ବ୍ୟବସ୍ଥା ଅଛି । ଗ୍ରାମପଞ୍ଚାୟତର କାର୍ଯ୍ୟକାଳ ପାଞ୍ଚବର୍ଷ ପାଇଁ ଧାର୍ଯ୍ୟ କରାଯାଇଛି । ଯଦି ପଞ୍ଚାୟତକୁ ଭାଙ୍ଗି ଦିଆଯାଏ ତେବେ ଛଅମାସ ମଧ୍ୟରେ ନିର୍ବାଚନ ହେବାର ବ୍ୟବସ୍ଥା ଅଛି । କିନ୍ତୁ ଏହା ଯଥେଷ୍ଟ ନୁହେଁ । ବ୍ରିଟିଶ ଶାସକମାନେ ପଞ୍ଚାୟତକୁ ଯେପରି ଭାବେ ବୁଝିଥିଲେ ତାଠାରୁ ଏ ସଂଶୋଧନ ବିଶେଷ କିଛି ଭିନ୍ନ ହୋଇପାରି ନାହିଁ । ସେମାନେ ପଞ୍ଚାୟତକୁ ସ୍ଥାନୀୟ ସ୍ୱାୟତ୍ତ ଶାସନ ବୋଲି ବୁଝିପାରି ନାହାନ୍ତି । ଏହାର କାରଣ କିଛିଟା ନ୍ୟସ୍ତ ସ୍ୱାର୍ଥ ଏବଂ କିଛିଟା ଅଭ୍ୟାସଗତ । ଉତ୍ତର ପ୍ରଦେଶ, ମଧ୍ୟ ପ୍ରଦେଶ ଓ ରାଜସ୍ଥାନରେ ମଫସଲର ଧନୀମାନେ ଏବଂ ସାମନ୍ତବାଦୀ ଶାସକମାନେ ପଞ୍ଚାୟତକୁ ନ୍ୟସ୍ତ ସ୍ୱାର୍ଥ ପାଇଁ ଅସ୍ତ୍ରଭାବେ ବ୍ୟବହାର କରିପାରନ୍ତି । ପଶ୍ଚିମବଙ୍ଗରେ ପଞ୍ଚାୟତ ଅନୁଷ୍ଠାନଗୁଡ଼ିକ ବହୁତ ଅଗ୍ରଗତି କରିଛି । ପଶ୍ଚିମବଙ୍ଗ ଭଳି ଅବସ୍ଥାକୁ ଆସିବାକୁ ସବୁ ରାଜ୍ୟଙ୍କର ପ୍ରାରମ୍ଭିକ ଲକ୍ଷ୍ୟ ହେବା କଥା । ବରଂ ଆମକୁ ପଶ୍ଚିମବଙ୍ଗଠାରୁ ବହୁତ ଆଗକୁ ଯିବାକୁ ପଡ଼ିବ ।

ସମ୍ବିଧାନ ସଂଶୋଧନର କୌଣସି ଆବଶ୍ୟକତା ନଥାଇ ପଞ୍ଚାୟତକୁ ଯେଉଁ ବିଷୟବସ୍ତୁ ଉପରେ ଅଧିକାର ଦିଆଯିବ ତାହାର ତାଲିକା ହୋଇଛି । ଏହା ପ୍ରକୃତରେ ପଞ୍ଚାୟତର କ୍ଷମତାକୁ ସଂକୁଚିତ କରୁଛି । ପଞ୍ଚାୟତ ଲୋକ ଶାସନର ପ୍ରଥମ ସ୍ତର ଭାବେ ଦେଶରେ ସର୍ବଶ୍ରେଷ୍ଠ କ୍ଷମତାଧିକାରୀ ପଞ୍ଚାୟତ ଜରିଆରେ ପ୍ରକାଶିତ ଲୋକଙ୍କ ଇଚ୍ଛାନୁସାରେ ଜିଲ୍ଲା, ରାଜ୍ୟ ଓ କେନ୍ଦ୍ରମାନେ ସଂକୁଚିତ କ୍ଷମତା ଉପଭୋଗ କରିବାଦରକାର । ତେଣୁ ଉପରୁ ତଳକୁ କ୍ଷମତା ବିକେନ୍ଦ୍ରୀକରଣ ପରିବର୍ତ୍ତେ ପଞ୍ଚାୟତରୁ ସଂସଦକୁ କ୍ଷମତା ସମର୍ପିତ ହେବା ଉଚିତ୍ । ଲୋକ ପ୍ରତିନିଧିମାନେ ପଞ୍ଚାୟତ ସ୍ତରରେ ବିଚାର କରି ସ୍ଥିର କରିବେ ସେମାନେ କେଉଁ ନିୟନ୍ତ୍ରକ ଏବଂ ଉନ୍ନତିମୂଳକ କାର୍ଯ୍ୟ ନିଜେ କରିପାରିବେ । ଯାହା ବାକି ରହିଲା ତାହା ଉପରକୁ ହସ୍ତାନ୍ତର ହେବ । ବ୍ଲକ୍, ଜିଲ୍ଲା ଏବଂ ରାଜ୍ୟସ୍ତରରେ ମଧ୍ୟ ସେଭଳି ହେବ । କେନ୍ଦ୍ରର କେବଳ ସେଇ କ୍ଷମତା ରହିବ ଯାହା ରାଜ୍ୟମାନେ ଖୁସିରେ ତାଙ୍କୁ ଅର୍ପଣ କରିବେ । ପଞ୍ଚାୟତ ଯେଉଁ କ୍ଷମତା ଜିଲ୍ଲା ରାଜ୍ୟ ବା କେନ୍ଦ୍ରକୁ ଅର୍ପଣ କରିଥିଲେ ତାହାର ପୁନରାଧିକାର କରିପାରିବେ । ଏହା ସମ୍ପୂର୍ଣ୍ଣ ଭାବେ ଏକ ଅଲଗା ବିଚାର । ବର୍ତ୍ତମାନ ଯେଉଁ ସଂବିଧାନ ରହିଛି ତାହା ଭାରତ ସରକାରଙ୍କ ୧୯୩୫ ଆଇନ ଉପରେ ପର୍ଯ୍ୟବସିତ । ଏହା ଯୁଗୋପଯୋଗୀ

ହୋଇ ରହିନାହିଁ । ଚାଳିଶ ବର୍ଷ ବିତି ଗଲାଣି ଉଭୟ ଆଭ୍ୟନ୍ତରୀଣ ଏବଂ ବାହ୍ୟିକ ପରିସ୍ଥିତିରେ ପରିବର୍ତ୍ତନ ଘଟିଲାଣି । ଲୋକମାନେ ନିଜକୁ ଏ ସମ୍ବିଧାନ ଦେଇଥିଲେ । ସେମାନଙ୍କର ଅଧିକାର ରହିଛି ଏହାକୁ ପରିବର୍ତ୍ତନ କରିବାକୁ ।

ବର୍ତ୍ତମାନ ଲୋକମାନଙ୍କର ଗଣତନ୍ତ୍ର ପାଇଁ ପ୍ରବଳ ଉତ୍ସାହ, ଆଶା, ଉଦ୍ଦୀପନା ଯାହା ବିଶ୍ୱରେ ପରିଲକ୍ଷିତ ହେଉଛି । ବିଶ୍ୱତମାମ ନିୟନ୍ତ୍ରିତ ସାମ୍ୟବାଦୀ ବ୍ୟବସ୍ଥା ଓ ଲୋକଙ୍କ ବିପକ୍ଷରେ ଯାଉଥିବା ସାମରିକ ଏକଛତ୍ରବାଦର ପରିସମାପ୍ତି ଘଟୁଛି । ଏହା ମାନେ ନୁହେଁ ଯେ ଏହିଠାରୁ ଗଣତନ୍ତ୍ର ଆଗେଇ ଚାଲିବ । ଏହା ଗୋଟିଏ କଷ୍ଟସାଧ୍ୟ ସାମାଜିକ ଅବସ୍ଥା । ଏହାକୁ ସଚେତନ ହୋଇ ଗଢ଼ିବାକୁ ପଡ଼ିବ ଏବଂ ମଜବୁତ୍ କରିବାକୁ ପଡ଼ିବ । ଗୋଟିଏ ବାସ୍ତବ ପଦକ୍ଷେପ ଏହି ଦିଗରେ ହେଉଛି ବିକେନ୍ଦ୍ରୀକରଣ । ଆଞ୍ଚଳିକ ସରକାରମାନେ କେନ୍ଦ୍ର ସରକାରଙ୍କ ତୁଳନାରେ ଅର୍ଥନୀତି କ୍ଷେତ୍ରରେ କେତେ ନିୟନ୍ତ୍ରଣ କରୁଛନ୍ତି ତାହା ବିକେନ୍ଦ୍ରୀକରଣର ଏକ ସୂଚକ, ଯଦିଚ ଏହା ଯଥେଷ୍ଟ ନୁହେଁ । ଏହା କୌତୁହଳପ୍ରଦ ଯେ ଶିଳ୍ପ ଉନ୍ନତ ଦେଶମାନେ ଭାରତ ଏବଂ ସାମ୍ୟବାଦୀ ରାଷ୍ଟ୍ରମାନଙ୍କଠାରୁ ଏ ଦିଗରେ ଯଥେଷ୍ଟ ଆଗୁଆ ଅଛନ୍ତି । ଶିଳ୍ପୋନ୍ନତ ଦେଶମାନଙ୍କରେ ସ୍ଥାନୀୟ ସରକାରଙ୍କ ଖର୍ଚ୍ଚ ପୂରା ସରକାରୀ ଖର୍ଚ୍ଚର ୨୫ ଭାଗରୁ ୪୫ ଭାଗ ମଧ୍ୟରେ ହୋଇଥାଏ । ସ୍କେଣ୍ଡିନେଭିୟାନ୍ ଦେଶମାନଙ୍କରେ ଏହା ହେଉଛି ସବୁଠୁ ଅଧିକ ଯଥା ଡ଼େନ୍‌ମାର୍କରେ ୪୫ ଭାଗ ଫିନ୍‌ଲାଣ୍ଡରେ ୪୧ ଭାଗ ସ୍ୱିଡ଼େନ୍‌ରେ ୩୭ ଭାଗ ନର୍‌ୱେରେ ୩୧ ଭାଗ । ବିକାଶୋନ୍ମୁଖୀ ଦେଶମାନଙ୍କରେ ସାଧାରଣତଃ ଏହା ୧୦ ଭାଗରୁ କମ୍ । ଅଧିକାଂଶ ଦେଶରେ ଏହା ୫ ଭାଗରୁ କମ୍ । ଆମେ ରାଜନୈତିକ ବ୍ୟବସ୍ଥାକୁ ଓଲଟାଇଦେବା ପୂର୍ବରୁ ଅର୍ଥନୈତିକ କେନ୍ଦ୍ରୀକରଣକୁ ଭାଙ୍ଗିବାକୁ ପଡ଼ିବ । ବହୁତ ବିଷୟ କେନ୍ଦ୍ର ସରକାରଙ୍କଠାରୁ ଦୂରେଇ ନେଇ ହେବ । କିନ୍ତୁ କିଛି ବିଷୟବସ୍ତୁ ଅଛି ଯାହାକି କେନ୍ଦ୍ର ସରକାରଙ୍କ ପାଖରେ ଆସନ୍ତା କିଛି ବର୍ଷ ପାଇଁ ଅନ୍ତତଃ ରହିବ ।

ପ୍ରତିରକ୍ଷା ବୈଦେଶିକ ସଂପର୍କ, ପୋଷ୍ଟ ଏବଂ ଟେଲିଗ୍ରାଫ, ରେଲବାଇ ବ୍ୟାଙ୍କ ଜୀବନ ବୀମା ... ଏହିଗୁଡ଼ିକ ହେଉଛି ମୁଖ୍ୟ ବିଷୟ ଯାହାକି ଏବେ କେନ୍ଦ୍ର ସରକାରଙ୍କ ପାଖରେ ରହିବ । କିନ୍ତୁ ଅନ୍ୟ ବହୁତ ବିଷୟ ଅଛି ଯାହାକି ଖୁବ୍ ଶୀଘ୍ର କେନ୍ଦ୍ରଠାରୁ ଅପସାରି ନେବା କଥା । ଶିକ୍ଷା, ସଂସ୍କୃତି, କ୍ରୀଡ଼ା, ମାନବ କଲ୍ୟାଣ, ସ୍ୱାସ୍ଥ୍ୟ, ଗ୍ରାମର ଉନ୍ନତି, କୃଷି, ବିଦ୍ୟୁତ .... ଏହି ବିଷୟରେ କୌଣସି ମନ୍ତ୍ରୀମଣ୍ଡଳ କେନ୍ଦ୍ରରେ ରହିବା ଆବଶ୍ୟକ ନୁହେଁ । ଯେଉଁ ମାନବ ସମ୍ବଳ ଏବଂ ଅର୍ଥନୈତିକ ସଂପଦ କେନ୍ଦ୍ରଦ୍ୱାରା ଏହି ବିଭାଗରେ ଖଟାଯାଇଛି ତାହାକୁ ପୂରାପୂରି ଭାବେ ରାଜ୍ୟମାନଙ୍କୁ ହସ୍ତାନ୍ତର କରିବା ଉଚିତ୍ । ଏହି ସମ୍ପଦରୁ ଅଧିକାଂଶ ସିଧା ଆଞ୍ଚଳିକ ସ୍ୱାୟତ୍ତ ଶାସନ

ସଂସ୍ଥାକୁ ଦେବା କଥା । ପ୍ରାରମ୍ଭିକ ଶିକ୍ଷା, ପ୍ରତିଷେଧକରଣ, ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର , ପିଇବା ପାଣି, କୃଷି, କ୍ଷୁଦ୍ର ଜଳସେଚନ, ଛୋଟ ଶିଳ୍ପ ଇତ୍ୟାଦି ପଞ୍ଚାୟତକୁ ହସ୍ତାନ୍ତର କରିବା କଥା । ସେହି ସଂପଦକୁ ବିନିଯୋଗ କରିବାର ଅନୁରୂପ ଅଧିକାର ରହିବା କଥା, ସେମାନଙ୍କୁ ପୂରାପୂରି ନିୟନ୍ତ୍ରଣ ଦାୟିତ୍ୱ ଦେବା କଥା । ଜିଲ୍ଲା କିମ୍ବା ରାଜ୍ୟ ସ୍ତରରେ ଏହାକୁ ରଦ୍ଦ କରିବାର କ୍ଷମତା ରହିବା କଥା ନୁହେଁ ।

ଏଇ ଯେଉଁ କ୍ଷମତାର ଢାଞ୍ଚାର ପରିବର୍ତ୍ତନ କରିବା କଥା କୁହାଯାଇଛି ତାହା ଏତେ ସୁବିଧାଜନକ ନୁହେଁ । ଯେଉଁମାନେ ଏବେ ଶାସନର ଶୀର୍ଷ ସ୍ଥାନରେ ଅଛନ୍ତି ସେମାନେ ଏହାକୁ ନିଶ୍ଚିତଭାବେ ବିରୋଧ କରିବେ । କେନ୍ଦ୍ର ଅଧିକ କ୍ଷମତାଶାଳୀ ହେବା ବିରୁଦ୍ଧରେ ଯେଉଁ ରାଜ୍ୟମାନେ ଚିତ୍କାର କରୁଛନ୍ତି, ସେମାନେ ଜିଲ୍ଲାମାନଙ୍କୁ କ୍ଷମତା ଦେବା ପାଇଁ ଅନିଚ୍ଛୁକ । ଜିଲ୍ଲାମାନେ ପଞ୍ଚାୟତ ସହିତ କ୍ଷମତା ବଣ୍ଟନ ପାଇଁ ପ୍ରସ୍ତୁତ ନୁହନ୍ତି । ପଞ୍ଚାୟତର ସଭାପତି ୱାର୍ଡ୍‌ର ପ୍ରତିନିଧିମାନଙ୍କୁ ଭଲପାଇବେ ନାହିଁ । ଏ ସବୁ ସତ୍ତ୍ୱେ କିପରି ଲୋକଙ୍କ ସ୍ୱାୟତ୍ତ ଶାସନ ନୂଆ ଭାବେ ପ୍ରତିଷ୍ଠା କରାଯାଇ ପାରିବ ତାହା ଚିନ୍ତା କରିବା ଦରକାର ।

ପ୍ରତ୍ୟେକ ଗାଁକୁ କିଛି ପରିବାରର ସମଷ୍ଟିରେ ବିଭକ୍ତ କରାଯାଉ । ଧରନ୍ତୁ ପ୍ରତ୍ୟେକ ସମଷ୍ଟିରେ ପ୍ରାୟ ୧୦୦ ଜଣ ଭୋଟର ଅଛନ୍ତି । ଏହିଭଳି ପ୍ରତ୍ୟେକ ସମଷ୍ଟି ଜଣେ ପୁରୁଷ ଓ ଜଣେ ନାରୀଙ୍କୁ ନିଜର ପ୍ରତିନିଧିଭାବେ ବାଛିବେ । ଭୋଟଦାନ ପୂରା ଖୋଲା ସଭାରେ ହେବ । ଏହା ଗୁପ୍ତ ପଦ୍ଧତିରେ ହେବ ନାହିଁ । ଏହି ପ୍ରତିନିଧିମାନେ ପରିବାର ସମଷ୍ଟି ଦ୍ୱାରା ଯେକୌଣସି ସମୟରେ ପ୍ରତ୍ୟାହୃତ ହୋଇପାରିବେ ଏବଂ ନୂଆ ପ୍ରତିନିଧି ପଠାଯାଇ ପାରିବେ । ୱାର୍ଡ୍ କିମ୍ବା ଗାଁର ସଭା ଏହିଭଳି ପ୍ରତିନିଧିମାନଙ୍କୁ ନେଇ ଗଠିତ ହେବ । ଏହି ୱାର୍ଡ୍ ସଭାରୁ ସେମାନେ ଜଣେ ପୁରୁଷ ଓ ଜଣେ ନାରୀଙ୍କୁ ପଞ୍ଚାୟତ ବୋର୍ଡ୍‌କୁ ନିର୍ବାଚନ କରି ପଠାଇବେ । ସେମାନେ ତା ଭିତରୁ ପଞ୍ଚାୟତର କର୍ମ କର୍ତ୍ତାଙ୍କୁ ନିର୍ବାଚିତ କରିବେ । ଏଭଳି କାର୍ଯ୍ୟକଳାପ ଅନ୍ତତଃ ପାଞ୍ଚବର୍ଷରେ ଥରେ ହେବ । ଯେକୌଣସି ସମୟରେ ଏବଂ ଯେ କୌଣସି ସ୍ତରରେ ପ୍ରତିନିଧିମାନଙ୍କୁ ଫେରାଇ ଆଣିହେବ ।

କେହି କାହାକୁ କ୍ଷମତା ଉପହାର ଆକାରରେ ଦିଏ ନାହିଁ । ଯେଉଁ ଅଧିକାର ପାଇଁ ଆମେ ସଂଗ୍ରାମକରୁ ଏବଂ ପାଉଁ ତାକୁ ବଜାୟ ରଖି ହୁଏ । ପ୍ରକୃତ ସ୍ୱାୟତ୍ତ ଶାସନ ପଞ୍ଚାୟତ ସ୍ତରରେ ଗଢ଼ିବା ଏବଂ କେନ୍ଦ୍ର, ରାଜ୍ୟ ଓ ଜିଲ୍ଲାରେ ଥିବା ନ୍ୟସ୍ତ ସ୍ୱାର୍ଥଙ୍କୁ ପରାଜିତ କରିବା ଏତେ ସୁବିଧା ନୁହେଁ । ଏହି ସଂଗ୍ରାମ ବେଶ୍ କିଛିଦିନ ଧରି ଚାଲିବ । ଏହି ସଂଗ୍ରାମ କେବଳ କ୍ଷମତା ଦଲାଲଙ୍କ ବିରୁଦ୍ଧରେ ନୁହେଁ । ଆମ ନିଜର ଆତ୍ମବିଶ୍ୱାସ ବିରୁଦ୍ଧରେ ମଧ୍ୟ ।

ଏଥିପାଇଁ ଲୋକମାନଙ୍କୁ ଆତ୍ମବିଶ୍ୱାସୀ ହେବାକୁ ପଡ଼ିବ । ସେମାନଙ୍କୁ ସମାଜ ଚଳାଇବା ପାଇଁ ସକ୍ଷମ ହେବାକୁ ପଡ଼ିବ । ଭାରତୀୟ ପରିସ୍ଥିତିରେ ସାକ୍ଷରତା ପାଇଁ ଅଭିଯାନ ଏ ଦିଗରେ ପ୍ରଥମ ପଦକ୍ଷେପ । ଆନ୍ଧ୍ରପ୍ରଦେଶର ନେଲୋର ଜିଲ୍ଲାର ଏବଂ ତାମିଲନାଡୁର ପୁଦୁ କୋଟାଇ ଜିଲ୍ଲାର ଅଭିଜ୍ଞତାରୁ ଜାଣିହେବ ଯେ ଲୋକଙ୍କର ନିଷ୍ଠା ଓ ଉଦ୍ୟମ କିପରି ସାକ୍ଷରତା ଅଭିଯାନ ଦ୍ୱାରା ଶକ୍ତିଶାଳୀ ହୋଇଛି । ଯେଉଁ ସାମାଜରେ ପଚାଶ ଶତାଂଶ ନିରକ୍ଷର ଏବଂ ଯେଉଁଠି ୯୦ ଶତାଂଶ ଲୋକ ଶିକ୍ଷା ଲାଭରୁ ବଂଚିତ ହେଉଛନ୍ତି ସେଠାରେ ପ୍ରକୃତ ଆଞ୍ଚଳିକ ସ୍ୱାୟତ୍ତ ଶାସନ ସମ୍ଭବ ହେବା କାଠିକର ପାଠ । ଯେଉଁ ପୃଥିବୀରେ ଜ୍ଞାନ ହିଁ ସବୁଠାରୁ ବଡ଼ ସମ୍ପଦ ଭାବେ ଗ୍ରହଣ କରାହୋଇଛି ଯେଉଁଠି ଅର୍ଥନୀତିରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଜ୍ଞାନ ଏବଂ ଯାନ୍ତ୍ରିକ କୌଶଳରେ ରହିଛି ସେଠାରେ ଖାଲି ସାକ୍ଷରତା ଯଥେଷ୍ଟ ନୁହେଁ । ସମାଜ ନିଜର ସମ୍ପଦକୁ ଚିହ୍ନଟ କରିବା ଏବଂ ତାକୁ ଦକ୍ଷତାର ସହ ନିଜ ବ୍ୟବହାର ଉପଯୋଗୀ ଦ୍ରବ୍ୟରେ ପରିଣତ କରାଇବା ପାଇଁ ସକ୍ଷମ ହେବା ଆବଶ୍ୟକ । ବୈଜ୍ଞାନିକ ଏବଂ ବୈଜ୍ଞାନିକ ଜ୍ଞାନ ବିଶାରଦମାନେ ଖାଲି ବିଶ୍ୱବିଦ୍ୟାଳୟ ଏବଂ ଗବେଷଣା ସଂସ୍ଥାରେ ନରହି, ଗାଁ ଗଣ୍ଡାରେ ଲୋକଙ୍କ ସହ କାମ କରିବା ଆବଶ୍ୟକ ।

ଲୋକଙ୍କ ପାଇଁ ବିଜ୍ଞାନ ଆନ୍ଦୋଳନ ମୁଣ୍ଡ ଟେକିଛି । ଏହାର ଉଦ୍ଦେଶ୍ୟ ହେଲା ସମାଜିକ ବିପ୍ଳବ ପାଇଁ ବିଜ୍ଞାନକୁ ବ୍ୟବହାର କରିବା । ଲୋକମାନେ ବିଜ୍ଞାନକୁ ବ୍ୟବହାର କରିବେ ନିଜକୁ ପରିବର୍ତ୍ତନ କରିବା ପାଇଁ, ସମାଜକୁ ଅପେକ୍ଷାକୃତ ଭଲ ସମାଜରେ ଏବଂ ଗଣତାନ୍ତ୍ରିକ ସମାଜରେ ପରିଣତ କରିବା ପାଇଁ ଲୋକଙ୍କ ସମ୍ମୁଖରେ ପରିଷ୍କାର ହୋଇଯିବ କିପରି ବିଭିନ୍ନ ବିକାଶମୂଳକ କାର୍ଯ୍ୟ ଥିଲାବାଲା ଏବଂ ନଥିଲାବାଲାଙ୍କ ଉପରେ ଅଲଗା ଅଲଗା ପ୍ରଭାବ ପକାଉଛି । ଲୋକଙ୍କ ସହାୟତାରେ ଆଞ୍ଚଳିକ କ୍ଷେତ୍ରରେ ଯୋଜନା ପ୍ରସ୍ତୁତି ପାଇଁ ଅଭିଯାନ ଚାଲିଛି । ଏହାର ଉଦ୍ଦେଶ୍ୟ ସ୍ଥାନୀୟ ପଞ୍ଚାୟତ ସ୍ତରରେ ସ୍ୱାୟତ୍ତ ଶାସନକୁ ଯୋଜନା ପ୍ରଣୟନ ଏବଂ କାର୍ଯ୍ୟକାରିତା ରେ ଧୀରେ ଧୀରେ ସ୍ୱାବଲମ୍ବୀ କରାଇବା, ଗାଁ ଗହଳରେ ସ୍ୱେଚ୍ଛାସେବୀ ମାନେ ବୈଜ୍ଞାନିକମାନଙ୍କ ସହ ବିସ୍ତୃତ ବିକାଶମୂଳକ ଯୋଜନା ପ୍ରସ୍ତୁତ କରୁଛନ୍ତି । ଲୋକେ ଅଂଶଗ୍ରହଣ କରିପାରୁଥିବା ଏକ ସୃଜନକ୍ଷମ ଗଣତନ୍ତ୍ର ପାଇଁ ଚେଷ୍ଟା ଚାଲିଛି । ଉପରୁ ତଳକୁ ଗଣତନ୍ତ୍ର ଗଢ଼ା ହୋଇ ପାରିବ ନାହିଁ । ଏହା ତଳୁ ଉପରକୁ ଗଢ଼ା ହେବ । ଏହା ହେଉଛି ଲୋକଙ୍କ ହାତରେ କ୍ଷମତା ସ୍ଲୋଗାନର ପ୍ରକୃତ ଅର୍ଥ ।

## ସମୟର ଚକ ଗଡ଼ି ଗଡ଼ିଯାଏ

ସମୟର ଚକ ଗଡ଼ି ଗଡ଼ି ଯାଏ
ଆଗକୁ ତାହାର ଗତି
ଅନେକ ବରଷ ଶାସନ ପରେବି
ବଦଳିଛି କିରେ କିଛି .....
ଶୋଷଣ ବଢ଼ଇଛି କଷଣ ବଢ଼ିଛି
ଅଭାବ ଯାଇଛି ମାତି
ଭାଇର ଛାତିରେ ଭାଇ ଛୁରି ମାରେ
ଧର୍ମ ଜାତି ନାମେ ନିତି
ଅନେକ ବରଷ ଶାସନ ପରେ ବି ବଦଳିଛି
କିରେ କିଛି ....
ନୀରିହ ବୋଲିତ ଆମରି ବଳରେ
ବଳିଆନ କିଛି ଲୋକ
ଭୋଟ ବେଳେ ସେ ଆମକୁ କିଣନ୍ତି
ମରେନି ପେଟର ଭୋକ
ସ୍ୱଳିଶି ବରଷ ଶାସନ ପରେବି ବଦଳିଛି କିରେ କିଛି ....
ସମୟ ବଦଳେ ସମାଜ ବଦଳେ
ସବୁତ ବଦଳି ଯାଏ
ଦୁଃଖ ଦୁର୍ଦ୍ଦଶା ହଟିବଳି କିଆଁ
କହିକି ପାରିବ କିଏ
ସ୍ୱଳିଶି ବରଷ ....

*ପ୍ରକାଶକ -*
ହମାର ଦେଶ ପ୍ରୋଗାମ୍ କମିଟି, ଓଡ଼ିଶା
ଏ/୧୨, (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର - ୭୫୧ ୦୦୩

***Printed at -***
SRI GURU GOURANGA PRESS
Nayapalli, Bhubaneswar - 751 012
Phone - 55517

Contribution Price - **Rs. 2/-**

# ଉପଭୋକ୍ତାବାଦର କଷଣ

ହମାରା ଦେଶ



## ଆଲୋଚନା ମାଳା

ପ୍ରସ୍ତୁତି—

ସର୍ବଭାରତୀୟ ଜନବିଜ୍ଞାନ ସଂଗଠନ

ଭାରତ ଜ୍ଞାନବିଜ୍ଞାନ ସମିତି, ଓଡ଼ିଶା

ଏ/୧୨, ( H I G ) ବରମୁଣ୍ଡା ହାଉସିଂବୋର୍ଡ କଲୋନୀ,

ଭୁବନେଶ୍ୱର—୭୫୧୦୦୩

# ଉପଭୋକ୍ତାବାଦର କଷଣ

## ଗୋଟିଏ ଦିନର ଆରମ୍ଭ-

ହଠାତ୍ ମୋ ନିଦ ଭାଙ୍ଗିଗଲା । ଗତକାଲି ରାତିରେ ମୁଁ ବହୁତ ଡେରିରେ ଶୋଇଥିଲି, ବିଜୁଳି ନ ଥିଲା ଏଣୁ ଫ୍ୟାନ୍ ଲଗାଇ ମଶାମାନଙ୍କୁ ତଡ଼ିପାରିଲି ନାହିଁ । ଛ'ଟା ଆଗରୁ ବୁଥ୍‌କୁ ନ ଗଲେ କ୍ଷୀର ପାଇପାରିବିନି । 'ଭଗବାନଙ୍କୁ ଅଶେଷ ଧନ୍ୟବାଦ, ବର୍ତ୍ତମାନ ଲାଇଟ୍ ଆସିଯାଇଛି, ଫ୍ୟାନ୍‌ଗୁଡ଼ିକ ଚାଲୁଛି । ମୁଁ ଲାଇଟ୍ ଜଳାଇ ଘଣ୍ଟା ଆଡ଼କୁ ଚାହିଁଲି, ପାଞ୍ଚଟା କୋଡ଼ିଏ । ବାହାରକୁ ବାହାରିଗଲି । ଦୁଇ ପ୍ୟାକେଟ୍ କ୍ଷୀର ମିଳିଗଲା । ଛୋଟିଆ ହିଟରଟିକୁ ଲଗାଇଲି । ତିନି ଦିନ ହେଲା ଗ୍ୟାସ୍ ସିଲିଣ୍ଡର ସରିଯାଇଛି । ଆଉ ଗୋଟିଏ ସିଲିଣ୍ଡର ପାଇବାକୁ କିଛି ଦିନ ଲାଗିଯାଇପାରେ; ଘରେ ଗୋଟିଏ କିରୋସିନି ଷ୍ଟୋଭ ଅଛି, ମୋ ସ୍ତ୍ରୀ ସେଇଟା ବ୍ୟବହାର କରେ । ଗୋଟିଏ କପ୍ କଫି ପାଇଁ ଏ ଛୋଟିଆ ହିଟରଟି ଯଥେଷ୍ଟ ।

ଗଣ୍ଡାକଡ଼ ଟ୍ୟାପ୍‌ରୁ ପାଣି ଆସିବାର ଶବ୍ଦ । ପାଖ ବସ୍ତିର ଲୋକମାନେ ଏହି ସାଧାରଣ ଟ୍ୟାପ୍ ତଳେ ଗାଧୋଇଥା'ନ୍ତି, ସେମାନଙ୍କ ଘରେ ଗାଧୁଆଘର ନାହିଁ । ପାଇଖାନା ମଧ୍ୟ ନାହିଁ । ସେମାନେ ନାଳ ନର୍ଦ୍ଦମାଗୁଡ଼ିକୁ ପାଇଖାନା ପାଇଁ ବ୍ୟବହାର କରନ୍ତି, ସେହିଠାରୁ ଦୁର୍ଗନ୍ଧ ଆସେ ।

ଆରେ ! ଗୋଟିଏ ବୁନ୍ଦା ବି କଫି ଛାଣି ହୋଇନାହିଁ । ହୁଏତ ଛଣାର ଛିଦ୍ରଗୁଡ଼ିକ ବନ୍ଦ ହୋଇଯାଇଛି । ତେଣୁ ଛଣା ଯାଇଥିବା କଫି ହେଉ ବା ରେଡ଼ିମେଡ୍ କଫି ହେଉ ତାହା ଖାଲି ଚିକୋରି ଆମ ଘରେ ପ୍ରକୃତ କଫିର ସ୍ବାଦ କେହି ଜାଣନ୍ତି ନାହିଁ । ସେମାନଙ୍କୁ ଖାଲି ଚିକୋରୀ କଫି ଲୋଡ଼ା ।

ଏ ଥରର ରେସନ୍ କାର୍ଡର ଚିନି ମନ୍ଦ ନୁହେଁ । ଦାନାଗୁଡ଼ିକ ଭଲ ସାଇଜ୍‌ର, କଫି ପିଉପିଉ ମୁଁ ମୋ ପଢ଼ା ଟେବୁଲ୍‌ରେ ବସିଗଲି । ଏ ଛୋଟିଆ ବହିଟିକୁ ମୋତେ ଆଜି ସାରିବାକୁ ହେବ ।

ପାଖ ଶୋଇବାଘରୁ ଶବ୍ଦ ଶୁଭୁଛି । ପିଲାମାନେ ଓ ସେମାନଙ୍କ ମାଆ ଉଠିଲେଣି । "ମୋ ବ୍ରସ୍ କେଉଁଠି ?" – ବଡ଼ ଜଣକର ପାଟି । ଏଇଟା ଏଇଠି

କୋଉଠି ଥିବ । ଘରେ କେଉଁ ଜିନିଷର ଠିକ୍ ନଥାଏ । ସେଠି ବର୍ତ୍ତମାନ ଟୁଥ୍‌ପେଷ୍ଟ ପାଇଁ ଧାଡ଼ି ଲଗି ଯାଇଥିବ । ଟ୍ୟୁବଟିରେ ଆଉ ଟିକିଏ ବି ପେଷ୍ଟ୍ ନାହିଁ । ତେବେ ଘରେ କିଛି ଦାନ୍ତ ଘଷା ପାଉଡ଼ର ଅଛି–ଚଳୁଗୀ ଦରକାରବେଳେ କାମରେ ଲଗିବ ।

"ଆଜି ଘରେ ଜଳଖିଆ ପାଇଁ କେବଳ ଉପମା ହେଇଛି । ଦି' ଦିନ ହେଲା ବିରି ସରି ଯାଇଛି । ଏଣୁ ଦୋସା ହେଇପାରିଲାନି ।" ଏହା ଥିଲା ମୋ ସ୍ତ୍ରୀଙ୍କ ସଫେଇ । ମୁଁ ମୋ ଜଳଖିଆ ସାରି ଅଫିସ୍ ଯିବା ପାଇଁ ସଜ ହୋଇଗଲି । ହେଇ ସିଏ ହାତରେ ଗୋଟିଏ ଲମ୍ବା ତାଲିକା ଧରି ଆସିଲେଣି । "ଯଦି ହାତରେ ସମୟ ଥାଏ ତେବେ ଆଜି ହିଁ କିଣିଆଣିବ ।" ନଚେତ୍ ମୋତେ ପାଖଦୋକାନରୁ ଅଳ୍ପ ଅଳ୍ପ କିଣି ଆଣିବାକୁ ପଡ଼ିବ ।"

ମୁଁ ତାଲିକା ଆଡ଼େ ଚାହିଁଲି । ବାପରେ କି ଲମ୍ବା ତାଲିକା ! ସରିବନି ବୋଧେ ।

## ତାଲିକାଧାରୀ ମଣିଷ

ମଣିଷର ବହୁତ ବ୍ୟାଖ୍ୟା ଅଛି । ମଣିଷ ଗୋଟିଏ ଭାବୁକ ପ୍ରାଣୀ, ଉତ୍ସୁକ ପ୍ରାଣୀ, ଯନ୍ତ୍ରମାନବ ଇତ୍ୟାଦି ଇତ୍ୟାଦି । ମୁଁ ଭାବେ ମଣିଷର ସବୁଠାରୁ ଭଲ ବ୍ୟାଖ୍ୟା ହେଲା–ମଣିଷ ଗୋଟିଏ ଲମ୍ବା ତାଲିକାଧାରୀ ପ୍ରାଣୀ । କାହିଁକି ଆପଣ କଣ ଏଥିରେ ରାଜି ନୁହନ୍ତି ? ତାଲିକା କେତେ ବଡ଼ ? ହଁ ! ଆମେ ଯେତେବଡ଼ ତାଲିକା କଥା କଳ୍ପନା କରୁଛୁ ଏହା ନିଶ୍ଚିତଭାବେ ତା'ଠାରୁ ବହୁତ ଅଧିକ ।

ଆସନ୍ତୁ ଗୋଟିଏ ମାନସିକ ପରୀକ୍ଷା କରିବା । ଭାରି ମଜା ଲାଗିବ । ଆମେ ଚାହୁଁଥିବା ଜିନିଷ ଓ ସେବା ଗୁଡ଼ିକରେ ଗୋଟିଏ ବିଶଦ୍ ତାଲିକା କରିବା । ଏଥିରୁ ଜଣାପଡ଼ିବ କେବଳ ଜିନିଷ ଛଡ଼ା ଆମେ ବହୁତ ପ୍ରକାରର ସେବା ଲୋଡ଼ିଥାଉ ।

ଏହି ସାମଗ୍ରୀ ଗୁଡ଼ିକ ବିଭିନ୍ନ ଲୋକଙ୍କଦ୍ୱାରା ତିଆରି ହୋଇଛି । ବହୁଦୂରରୁ କିମ୍ବା ଅତି ନିକଟରୁ ଏହାକୁ ଅଣାଯାଇ ବିକ୍ରି କରଯାଉଛି ।

ସକାଳୁ ଉଠିବା ମାତ୍ରେ ଆପଣଙ୍କର କଫି ଦରକାର ହୋଇପାରେ, ସେଥିପାଇଁ କଫି ପାଉଡ଼ର, କ୍ଷୀର, ଚିନି, ଛାଙ୍କେଣୀ, ପାତ୍ର, କପ୍‌ପ୍ଲେଟ୍ ଇତ୍ୟାଦି.....

ଟଏଲେଟ୍ ପାଇଁ ଟୁଥପେଷ୍ଟ, ବ୍ରଶ୍, ବ୍ଲେଡ୍, ସାବୁନ, ତେଲ, ତଉଲିଆ, କଳପାଣି ଆଦି...ତାପରେ ଖବରକାଗଜ, ରେଡ଼ିଓ, ବସିବା ପାଇଁ ଚେୟାର–ଏସବୁ ଜିନିଷ ଆପଣଙ୍କୁ କିଣିବାକୁ ହୁଏ, ଖାଲି ଜଳଖିଆଟା ପ୍ରସ୍ତୁତିରେ ବହୁତ ଲୋକଙ୍କର ଶ୍ରମ ରହିଛି । ଚାଉଳ, ବିରି, ଲୁଣ, ଦୋସାପାଇଁ ତେଲ–ଏଗୁଡ଼ିକ ବହୁ ଲୋକଙ୍କର ଶ୍ରମର ଫଳ । କିନ୍ତୁ ଆପଣଙ୍କ ଦ୍ୱାରା କିଣାଯାଇନି, ଚଟଣୀରେ ବ୍ୟବହାର ହେଉଥିବା ସୋରିଷ, ଲଙ୍କା ଆଉ ନଡ଼ିଆ ଆପଣଙ୍କ ଅଜ୍ଞାତରେ ହେଇନପାରେ । ତାବାଦ୍ ଆପଣଙ୍କର ଯାତ୍ରା, ପୋଷ୍ଟାଲ୍ ସୁବିଧା ଯାହାକି ଆପଣ ଉପଭୋଗ କରୁଛନ୍ତି, ରେଡ଼ିଓ, ଟେଲିଭିଜନ, ପିଲାଙ୍କ ପାଠପଢ଼ା ସ୍ୱାସ୍ଥ୍ୟର ଯତ୍ନ, ଅବସର ବିନୋଦନ–ପ୍ରତି ମୁହୂର୍ତ୍ତରେ ଆପଣ ଅନ୍ୟମାନଙ୍କ ସହ ସଂଶ୍ଳିଷ୍ଟ–ସବୁବେଳେ ଖାଉଟି ଓ ଉତ୍ପାଦନର ସଂପର୍କ । ଗୋଟିଏ କଥାରେ ମଣିଷକୁ "ଚିରନ୍ତନ ଖାଉଟି' ଭାବେ ବ୍ୟାଖ୍ୟା କରଯାଇପାରେ । ଆମେ ଯେତେକ ଦ୍ରବ୍ୟ ବା ସେବା ଦରକାର କରୁ ସେଇଥିପାଇଁ ଆମକୁ କିଣିବାକୁ ପଡ଼େ ।

ଆଉ ଗୋଟିଏ ପରୀକ୍ଷା କରଯାଇପାରେ । ଗୋଟିଏ ମଧ୍ୟମ ଧରଣର ସହରର ଏକାଦଶ ଶ୍ରେଣୀର ପିଲାମାନଙ୍କୁ ନେଇ ଯୋଜନା କରଯାଇପାରେ । ସେମାନଙ୍କୁ ୩।୪ଟି ଶ୍ରେଣୀରେ ବିଭକ୍ତ କରଯାଉ । ପ୍ରତ୍ୟେକ ବିଭାଗକୁ ଗୋଟିଏ ଦୁଇଶହ ପୃଷ୍ଠା ବିଶିଷ୍ଟ ଟିପାଖାତା ଓ କର୍ମ ଦିଆଯିବ । ସେମାନଙ୍କୁ ସହରରେ ଥିବା ସମସ୍ତ ଦୋକାନକୁ ଯିବାକୁ ହେବ ଏବଂ ଦୋକାନିମାନଙ୍କ ଦ୍ୱାରା ବିକ୍ରୀ କରଯାଉଥିବା ପ୍ରତ୍ୟେକଟି ପଦାର୍ଥର ଗୋଟିଏ ତାଲିକା ସେମାନେ କରିବେ । ତା' ଛଡ଼ା ଏହି ଜିନିଷ ଗୁଡ଼ିକର ଆମଦାନୀ ଓ ଉତ୍ପାଦନ ସ୍ଥଳୀ ବିଷୟରେ ମଧ୍ୟ ତାଲିକା କରିବାକୁ ହେବ । ଗୋଟିଏ ବିଭାଗ ମନୋହରୀସାମଗ୍ରୀ ଉପକରଣ, ଗୋଟିଏ ବିଭାଗ ବିଦ୍ୟୁତ୍ ସାମଗ୍ରୀ, ଅନ୍ୟ ଗୋଟିଏ ବିଭାଗ ଖାଦ୍ୟ ସାମଗ୍ରୀ ତାଲିକା, କିଛି ଔଷଧ ତାଲିକା, କିଛି ବିଦ୍ୟାଳୟ, କିଛି ଚିକିତ୍ସାଳୟ, କିଛି ପୋଷ୍ଟ ଅଫିସ୍, ଅନ୍ୟାନ୍ୟ ଅଫିସ ସାମଗ୍ରି ଇତ୍ୟାଦି । ପରିଶେଷରେ ଆପଣ ଅନୁଭବ କରିବେ ଯେ ପ୍ରତ୍ୟେକ ଫେରିଆସି ଆଉ ଗୋଟିଏ ଗୋଟିଏ ଟିପା ଖାତା ମାଗୁଛନ୍ତି ।

ମୁଁ ଗୋଟିଏ ଭିନ୍ନ ଧରଣର ଛୋଟ ପରୀକ୍ଷା କରିଥିଲି । ମୋ ଘର ପାଖରେ ରହୁଥିବା ଦୋକାନୀକୁ ମୁଁ ଭଲଭାବେ ଚିହ୍ନିଥିଲି । ସେ ମୋର ସାଙ୍ଗ ଥିଲା । ପ୍ରତି ବର୍ଷ ସେ ତା ଦୋକାନରେ ବିକ୍ରୀ ହେଉଥିବା ସାମଗ୍ରୀ ଗୁଡ଼ିକର ଗୋଟିଏ ତାଲିକା ପ୍ରସ୍ତୁତ କରୁଥିଲା । ସେ ମୋତେ ସେହି ତାଲିକାର ଗୋଟିଏ

ନକଲ ଦେଇଥିଲ । ସେହି ତାଲିକାରେ ତିନି ହଜାରଟି ବିଭିନ୍ନ ସାମଗ୍ରୀର ନାଁ ରହିଥିଲା ।

ଗୋଟିଏ ପରିବାରର ବାପା, ମା ଓ ପିଲମାନେ ସମସ୍ତେ ମିଶି ଯଦି ସେମାନେ ବିଗତ କେତେ ମାସରେ କିଣିଥିବା ଓ ଭବିଷ୍ୟତରେ କିଣିବାକୁ ଥିବା ସାମଗ୍ରୀର ତାଲିକା ପ୍ରସ୍ତୁତ କରନ୍ତି ତାହା ସେମାନଙ୍କର ଅଶେଷ ଉପକାରରେ ଆସିବ । ଏହି ତାଲିକାରେ କେବଳ ସାମଗ୍ରୀ ଗୁଡ଼ିକର ନାମ ରହିବ । ପରିମାଣ ବା ମୂଲ୍ୟ ଗୁରୁତ୍ୱପୂର୍ଣ୍ଣ ନୁହେଁ । କେବଳ ଜିନିଷ ଗୁଡ଼ିକର ନାମତାଲିକା—ସେତିକି ଯଥେଷ୍ଟ । ଏଭଳି ଗୋଟିଏ ତାଲିକା ପ୍ରସ୍ତୁତ କରିବାପାଇଁ ନିଶ୍ଚିତ ରୂପେ କିଛିଦିନ ସମୟ ଲଗିପାରେ । କିନ୍ତୁ ଏହି ତାଲିକାଟି ଥରେ ପ୍ରସ୍ତୁତ ହୋଇଗଲେ ଆପଣ ଆଶ୍ଚର୍ଯ୍ୟ ହୋଇଯିବେ । ତାଲିକାରେ ହଜାର ହଜାର ନ ହେଲେ ବି ଶହ ଶହ ସାମଗ୍ରୀର ନାଁ ଥିବ । ଏହି ଜିନିଷ ଗୁଡ଼ିକ ମଧ୍ୟରୁ କିଛି ଜିନିଷ ବିନା ଆପଣ ତ ଆଦୌ ବଞ୍ଚିପାରିବେ ନାହିଁ ।

## ନିର୍ଭରଶୀଳ ମାନବ

ଆପଣଙ୍କର ସ୍ୱାଛନ୍ଦ୍ୟ ଓ ଜୀବନ ହଜାର ହଜାର ଲୋକଙ୍କ ଉପରେ ନିର୍ଭର କରେ । ହୁଏତ କେବେହେଲେ ଆପଣଙ୍କ ମନକୁ ଆସିନଥିବ ଯେ ଷ୍ଟୋଭରେ ଗୋଟିଏ ଦିଆସିଲି କାଠି ମାରିବା ବେଳେ ଆପଣ ହଜାର ହଜାର ଲୋକଙ୍କର ସାହାଯ୍ୟ ନେଉଛନ୍ତି ଓ ସେମାନଙ୍କଠାରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଋଣୀ ହେଉଛନ୍ତି । ଯେ କୌଣସି ଛୋଟ ଜିନିଷଟିଏ ଆପଣ ବ୍ୟବହାର କରନ୍ତୁ ନା କାହିଁକି ଆପଣ ଅନୁଭବ କରିପାରିବେ ଯେ ବ୍ୟବହୃତ ପ୍ରତିଟି ଉପକରଣର ଗୁଡ଼ାଏ ଅନ୍ତଃସଂଯୋଗ ରହିଛି । କିନ୍ତୁ ଏହା ଏକ ବିଡ଼ମ୍ବନାର ବିଷୟ ଯେ ପ୍ରତ୍ୟେକ ମଣିଷ କେବଳ ନିଜ ବିଷୟରେ ଚିନ୍ତା କରେ । କିନ୍ତୁ ଏହା ସତ ଯେ ଆମେ ଗୋଟିଏ ଦିନ ମଧ୍ୟ ଶହ ଶହ ଲୋକଙ୍କ ଶ୍ରମର ଫଳ ଉପଭୋଗ ନ କରି ଚଳି-ପାରିବା ନାହିଁ ।

## ଏହାର ପ୍ରଭାବ କଣ ? ସବୁବେଳେ କଣ ଏପରି ଥିଲା ?

ଏହାର ପ୍ରଭାବ ବହୁତ ଏବଂ ଜଟିଳତା ମଧ୍ୟ ଅଧିକ, କିନ୍ତୁ ଏହା ଚିରଦିନ ଏଭଳି ନ ଥିଲ । ମଣିଷମାନେ ଅନ୍ୟ ପ୍ରକାର ଜୀବନଯାପନ କରୁଥିଲେ । ଏପ-ରିକି ଏହି ଶତାବ୍ଦୀର ଆରମ୍ଭମାତ୍ର ଶହେ ବର୍ଷ ମଧ୍ୟରେ—ଆମେ ବଜାରରୁ ବହୁତ

କମ୍ ଜିନିଷ କିଣୁଥିଲେ । ସେ ସମୟରେ ବର୍ତ୍ତମାନ ମିଳୁଥିବା ଜିନିଷ ଗୁଡ଼ିକର ଶହେ ଭାଗରୁ ଭାଗେ ଜିନିଷ ମଧ୍ୟ ମିଳୁ ନ ଥିଲା । ଏଭଳି କି କୋଟିଏ ତିରିଶ ବର୍ଷ ତଳେ ମଧ୍ୟ ଚଳଣି ଅନ୍ୟ ପ୍ରକାରର ଥିଲା । ବର୍ତ୍ତମାନ ଦୁନିଆଁରେ ସାମଗ୍ରୀ ଗୁଡ଼ିକର ସଂଖ୍ୟାରେ ଅନେକ ବୃଦ୍ଧି ଘଟୁଛି ଏବଂ ଏହି ସଂଖ୍ୟା ଭବିଷ୍ୟତରେ ମଧ୍ୟ ବଢ଼ି ଚାଲିବ ।

## ଉପଭୋକ୍ତା ବାଦର ବିବର୍ତ୍ତନ

ଦଶହଜାର ବର୍ଷ ପୂର୍ବେ ବଜାର ନ ଥିଲା, କୌଣସି କିଣାବିକା ସାମଗ୍ରୀ ମଧ୍ୟ ନ ଥିଲା । ଆଦିମ ମାନବମାନେ ସଂଗ୍ରାହକ ଥିଲେ । ସେମାନେ ଉତ୍ପାଦକ ନ ଥିଲେ । ବୋଧହୁଏ କୃଷି ମଣିଷର ପ୍ରଥମ ଉତ୍ପାଦନ ସାମଗ୍ରୀ ଥିଲା । କିନ୍ତୁ ଏହି ଉତ୍ପାଦନ ସାମଗ୍ରୀକୁ ସେମାନେ ଉପଭୋଗ କରୁଥିଲେ । ବିକ୍ରୀ କରୁନଥିଲେ ଯେତେବେଳେ ଉତ୍ପାଦନ ବୃଦ୍ଧି ପାଇଲା ଏବଂ ଶ୍ରମ ବିଭାଜନ ହେବାକୁ ଲାଗିଲା ସେତେବେଳେ ବଜାର ସୃଷ୍ଟି ହେବାକୁ ଲାଗିଲା । ତଥାପି ସେ ବଜାର ଆକାରରେ ବହୁତ ଛୋଟ ଥିଲା । ଯେଉଁ ସାମଗ୍ରୀଗୁଡ଼ିକ ଉତ୍ପାଦନ ହେଉଥିଲା ତାହାର ବହୁତ ଅଳ୍ପ ବିକ୍ରୀ କରାଯାଉଥିଲା । କିନ୍ତୁ ପୁଞ୍ଜିବାଦର ଅଗ୍ରଗତି ସହିତ ବଜାରର ଖୁବ୍ ଶୀଘ୍ର ପଟ ପରିବର୍ତ୍ତନ ଘଟିଲା । ଉତ୍ପାଦନର ମୁଖ୍ୟ ଉଦ୍ଦେଶ୍ୟ ଅଦଳ ବଦଳ ଓ ଲାଭ । ଅଧିକ ଲାଭର ଅର୍ଥ ଅଧିକ ଉତ୍ପାଦନ, ଅଧିକ ବିନିମୟ, ଅଧିକ ସାମଗ୍ରୀ ଏବଂ ଅଧିକ ବଜାର । ବଞ୍ଚିବା ଧାରା ଭଳି ସାମାଜିକ ଧାରାଟି ମଧ୍ୟ ସ୍ଥିର ହୋଇ ରହେ ନାହିଁ । ତାହାର ବୃଦ୍ଧି ହୁଏ । ବିନାଶ ବା ଅପଚୟ ହୁଏ, ବା ମୃତ୍ୟୁ ହୁଏ । ଏଠି ସ୍ୱାଭାବିକ ପ୍ରବୃତ୍ତିଟି ହେଉଛି ମୃତ୍ୟୁକୁ ପ୍ରତିରୋଧ କରିବା । ପୁଞ୍ଜିବାଦ ସଂପ୍ରସାରଣ ଦ୍ୱାରା ହିଁ ବଞ୍ଚିରହିପାରିବ । ପ୍ରକୃତିଗତ କାରଣରୁ ପୁଞ୍ଜିବାଦ ବ୍ୟବସ୍ଥାରେ ସର୍ବଦା ପଦାର୍ଥ ଓ ଶ୍ରମର ଉତ୍ପାଦନ ବୃଦ୍ଧି କରିବାକୁ ହିଁ ହେବ ।

ଆମ୍ଭେମାନେ ପୂର୍ବରୁ ଆଲୋଚନା କରିଛେ ଯେ, ଆମ୍ଭେମାନେ କେବଳ ସାମଗ୍ରୀ ଦରକାର କରୁନା ଆମ୍ଭେମାନେ ବହୁତ ପ୍ରକାରର ସେବା ମଧ୍ୟ ଲୋଡ଼ିଥାଉ । ଶିକ୍ଷା, ସ୍ୱାସ୍ଥ୍ୟ, ପରିବହନ, ଯୋଗାଯୋଗ, ଅବସର ବିନୋଦନ, ନ୍ୟାୟ ପ୍ରଶାସନିକ ରକ୍ଷଣାବେକ୍ଷଣ—ଏବଂ ଏମିତି ଅନେକ କିଛୁ କିଛି ବର୍ଷ ପୂର୍ବେ ଏହା ସେଭଳି ନଥିଲା । ପ୍ରଥମତଃ ଆମେ ସେତେବେଳେ ଏତେ ପ୍ରକାରର ସେବାଲୋଡୁ ନ ଥିଲୁ । ସେଥିରୁ ଅଧିକାଂଶ ଆମେ ନିଜେ କରିପାରୁଥିଲୁ, କିନ୍ତୁ ବର୍ତ୍ତମାନ ଆମେ

ସବୁ ଜିନିଷ ପାଇଁ ଅନ୍ୟମାନଙ୍କ ଉପରେ ନିର୍ଭର କରୁଛୁ । ବର୍ତ୍ତମାନ ଯୁଗରେ ପ୍ରତ୍ୟେକଟି ପଦାର୍ଥ ଗୋଟିଏ କ୍ରୟ ସାମଗ୍ରୀ । ପ୍ରତ୍ୟେକ ଜିନିଷ ଆମ୍ଭମାନଙ୍କୁ କିଣି-ବାକୁ ହୋଇଥାଏ । ଏପରିକି ବର୍ତ୍ତମାନ ପିତାମାତା ଓ ପିଲମାନେ ସମସ୍ତେ ଗୋଟିଏ ଗୋଟିଏ ସାମଗ୍ରୀରେ ପରିଣତ ହେଲେଣି । ପ୍ରାକ୍ତନ ସମାଜବାଦୀ ରାଷ୍ଟ୍ରମାନେ ଯେଉଁମାନେ ଉତ୍ପାଦନ କେବଳ ଉପଭୋଗ ପାଇଁ ବିନିମୟପାଇଁ ନୁହେଁ ବୋଲି ଭାବୁଥିଲେ ସେମାନେ ଉପଭୋଗକୁ ସମ୍ମାନ ଦେବା ଆରମ୍ଭ କଲେଣି କାରଣ ଉପଭୋଗରେ ସେମାନେ ପୁଞ୍ଜିବାଦୀ ରାଷ୍ଟ୍ରଗୁଡ଼ିକୁ ପଛରେ ପକାଇ ଆଗେଇ ଯିବାକୁ ଚାହାନ୍ତି । ସାରା ପୃଥିବୀରେ ଗୋଟିଏ ଉପଭୋକ୍ତାବାଦର ଏକ ପାଗଳାମି ଏବେ ଦେଖାଦେଇଛି । ଏପରିକି ଭାରତପରି ଦରିଦ୍ର ରାଷ୍ଟ୍ରରେ ମଧ୍ୟ ଗୋଟିଏ ବିଶିଷ୍ଟ ଶ୍ରେଣୀ ବସ୍ତୁବାଦ ପଛରେ ଧାଇଁଛନ୍ତି ।

ଏହାର ତାତ୍ପର୍ଯ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ସହର ମଣିଷଙ୍କ ପାଇଁ କେବଳ ନୁହେଁ, ପ୍ରତ୍ୟେକଟି ଜୀବନ ପ୍ରତି ଏହା ଏକ ବିପଦ ଘଣ୍ଟି ସଦୃଶ ।

ଉପଭୋକ୍ତାର କୁ-ପ୍ରଭାବ ସବୁ ହେଲା-

୧) ଅତ୍ୟଧିକ ପରସ୍ପର ନିର୍ଭରଶୀଳତା ଏବଂ ଏହାର ବିକାଶ ଫଳରେ ବହୁ ବାହ୍ୟ ଓ ଆନ୍ତଃ ସମସ୍ୟାର ସୃଷ୍ଟି ।

୨) ଏଭଳି ଗୁଡ଼ିଏ ସାମଗ୍ରୀର ସୃଷ୍ଟି ହେଉଛି ଯାହାର କି ବିନିମୟ ମୂଲ୍ୟ ଓ ବ୍ୟବହାରିକ ମୂଲ୍ୟ ଅଛି କିନ୍ତୁ ତାହାର ଜନକଲ୍ୟାଣକାରୀ ମୂଲ୍ୟ ଅଛି କି ନାହିଁ ତାହା ସନ୍ଦେହପୂର୍ଣ୍ଣ ।

୩) ଏଥିରେ କିଛି ଲୋକ ଧନୀ ହେଉଛନ୍ତି କିନ୍ତୁ ଆଉ କିଛି ଲୋକ ଦରିଦ୍ର ହେଉଛନ୍ତି ।

୪) ସିମୀତ ପ୍ରାକୃତିକ ସମ୍ପଦର ଅପଚୟ ।

୫) ପରିବେଶର ଅବକ୍ଷୟ ଯାହାକି ବିଶ୍ୱତମାମ ବିଭିଷିକା ସୃଷ୍ଟି କରିଛି ।

## ପରସ୍ପର ସମ୍ବନ୍ଧ

ଦେଖାଯାଉଛି ଭାରତର ଯେ କୌଣସି ପ୍ରାନ୍ତର ଗୋଟିଏ ସାଧାରଣ ପରି-ବାର ଏବଂ ଉନ୍ନତଶୀଳ ରାଷ୍ଟ୍ରଗୁଡ଼ିକର ଯେ କୌଣସି ପ୍ରାନ୍ତର ଗୋଟିଏ ପରିବାର ଦେଶ ଭିତରେ ଓ ଦେଶ ବାହାରେ ହଜାର ହଜାର ଲୋକଙ୍କ ଶ୍ରମ ସହ ସଂଶ୍ଲିଷ୍ଟ,

ଏବଂ ଆମେ ସମସ୍ତେ ଅର୍ଥନୈତିକ ଚକ୍ରଦୈତ୍ୟର ଗୋଟିଏ ଗୋଟିଏ ଅଂଶ ହୋଇ-ଯାଇଛେ । ଗୋଟିଏ ୧ କୋଟି ଟନ୍ କ୍ଷମତା ବିଶିଷ୍ଟ ଲୁହା କାରଖାନାରେ ନା ଶ୍ରମିକ ନା ସାଧାରଣ ଜନତା କାହାର ହେଲେ କର୍ତ୍ତୃତ୍ୱ ନାହିଁ । ସେହିଭଳି ଗୋଟିଏ ଦଶହଜାର ମେଗାଓ୍ୱାଟ ଶକ୍ତି ବିଶିଷ୍ଟ ବିଦ୍ୟୁତ୍ ପ୍ରକଳ୍ପରେ ପ୍ରାୟ ଅଧିକାଂଶ ଉପଭୋକ୍ତା ମୁଷ୍ଟିମେୟ କେତେ ଜଣଙ୍କ ନିଷ୍ପତ୍ତି ଉପରେ କରୁଣାର ପାତ୍ର ହୋଇ ରହନ୍ତି । ଏବେ ସାରା ପୃଥିବୀ ଗୋଟିଏ ପରସ୍ପର ସଂଲଗ୍ନ ବଜାରରେ ପରିଣତ ହୋଇଛି । ଏହା ଆଦର୍ଶବାଦୀ ଚିନ୍ତାଧାରାରେ ନିୟନ୍ତ୍ରିତ ନ ହୋଇ ଅବାଧ ପ୍ରତିଦ୍ୱନ୍ଦ୍ୱିତା ଦ୍ୱାରା ନିୟନ୍ତ୍ରିତ ହେଉଛି । ଏହି ଉଗ୍ର ଓ ଆଧୁନିକ ଚିନ୍ତାଧାରା ସଂପନ୍ନ ରାଷ୍ଟ୍ର ହେଉଛନ୍ତି ଆମେରିକା ଯାହାର ରାଷ୍ଟ୍ର ସାମରିକ ଶକ୍ତିଦ୍ୱାରା ବଜାର ପରିରକ୍ଷିତ ହେଉଛି । ଅତ୍ୟଧିକ ସାମଗ୍ରୀର ଉତ୍ପାଦନ ଏବଂ ବୃଦ୍ଧି ମଣିଷ ସମାଜକୁ ଏକ ଘୋର ଘଡ଼ିସନ୍ଧି ସମୟରେ ପହଞ୍ଚାଇ ଦେଇଛି । ଆମର ଜୀବନ ଯାହାକି ଅନ୍ୟ ଲୋକଙ୍କ ଉପରେ ନିର୍ଭରଶୀଳ ଓ ଯେଉଁମାନେ ନିଜେ ନିଜର ପ୍ରଭୁ ନୁହନ୍ତି । ଏହି-ଭଳି ଏକ ବ୍ୟବସ୍ଥା ଯୋଗୁଁ ଗୋଟିଏ ଅସ୍ଥିର ଅବସ୍ଥା ସୃଷ୍ଟି କରୁଛି । ମଣିଷ ସମାଜ ସଂପୂର୍ଣ୍ଣରୂପେ ତା'ର ଭାରସାମ୍ୟତା ହରାଇବା ଅବସ୍ଥାକୁ ଆସିଛି ।

## ଉପଯୋଗ ନା ଜନକଲ୍ୟାଣ

ଆମ୍ଭେମାନେ ଆଗରୁ ଦେଖିଛେ ଆମର ବଜାର ଗୁଡ଼ିକରେ ବହୁତ ପ୍ରକାର ପଦାର୍ଥର ବନ୍ୟା ଛୁଟିଛି ସେଥିମଧ୍ୟରୁ ଅତି ଦରକାରୀ ବସ୍ତୁ ଅର୍ଥାତ୍ ଖାଦ୍ୟ, ପାନୀୟ, ବସ୍ତ୍ର ଓ ବାସଗୃହ ଇତ୍ୟାଦି ଅନ୍ତର୍ଭୁକ୍ତ । ଏଭଳି ମଧ୍ୟ ପଦାର୍ଥ ଅଛି ଯାହା ଜୀବନକୁ କମ୍ ପରିଶ୍ରମୀ, କମ୍ କ୍ଳାନ୍ତ, ଅଧିକ ଆରାମଦାୟକ କରୁଛି । ୨୦ କି.ମି. ଚାଲିବା ଅପେକ୍ଷା ବସ୍‌ରେ ଯିବା ଅଧିକ ସୁଖକର । କିନ୍ତୁ ଏହି ପଥ ଅତିକ୍ରମ କରିବାପାଇଁ ନିଜପାଇଁ ବା ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ପାଇଁ ଗୋଟିଏ ଗୋଟିଏ ମୋଟରକାର ଯଦି ଦରକାର ତାହା ଭିନ୍ନ କଥା । ହୁଏତ ସାବୁନ୍ ବାଦାମର ଗୁଣ୍ଡ ବା ସବୁଜ ଚଣାର ଗୁଣ୍ଡଠାରୁ ଗୋଟିଏ ସାବୁନ୍‌ର ବ୍ୟବ-ହାର ଅଧିକ ସୁବିଧାଜନକ । କିନ୍ତୁ ଆପଣ କେତେ ପ୍ରକାରର ସାବୁନ୍ ଦରକାର କରନ୍ତି ? ଏତେ ପ୍ରକାରର ସାବୁନ୍ ତିଆରି କରିବା ପାଇଁ ଏତେ ଗୁଡ଼ିଏ ପୁଞ୍ଜିର ବିନିଯୋଗ ନ କରିଥିଲେ କିଛି ଖରାପ ହୋଇନଥାନ୍ତା, କିନ୍ତୁ ପ୍ରକୃତ କଥାଟି ତାହା ନୁହେଁ । ସେମାନେ ଆପଣଙ୍କୁ ଖୋସାମଦ କରିବାପାଇଁ ନାନାପ୍ରକାର ବିଜ୍ଞାପନର

ସହାୟତା ନିଅନ୍ତି । ଯାହା ଫଳରେ ଆପଣ ଗୋଟିଏ କିସମର ସାବୁନକୁ ଛାଡ଼ି ଆଉ ଗୋଟିଏ କିସମର ସାବୁନ୍ କିଣିବାପାଇଁ ପସନ୍ଦ କରନ୍ତି । ଏଥିପାଇଁ ସେମାନେ ଯେତେ ମୂଳଧନ ଖଟାନ୍ତି ହୁଏତ ସାବୁନ୍ ତିଆରିରେ ସେତେ ଅର୍ଥ ଖର୍ଚ୍ଚ ହୋଇନଥିବ । ଏହା କେବଳ ସାବୁନ୍ କ୍ଷେତ୍ରରେ ନୁହେଁ ଅନ୍ୟ ସବୁ ପଦାର୍ଥର ବିକ୍ରୟ କ୍ଷେତ୍ରରେ ପ୍ରଯୁଜ୍ୟ । ଖବରକାଗଜ ଗୁଡ଼ିକରେ ଶତକଡ଼ା ୬୦ ରୁ ଅଧିକ ପୃଷ୍ଠା କେବଳ ବିଜ୍ଞାପନରେ ବ୍ୟବହାର ହୁଏ । ଏହା ପରୋକ୍ଷରେ ଆପଣଙ୍କୁ ଗୋଟିଏ ପଦାର୍ଥ ପ୍ରତି ଆକର୍ଷିତ କରାଇଛି । ଯେ ସେହି ପଦାର୍ଥ ଗୁଡ଼ିକୁ ନିଶ୍ଚିତ ରୂପେ ଗ୍ରହୁଁ ନାହିଁ ଏବଂ ଯଦିଓ ସେଥିରେ ତାର କୌଣସି ଉପକାରିତା ନାହିଁ ତଥାପି ସେ ତାହାକୁ କିଣୁଛି । ସେହିଭଳି ସମସ୍ତେ ଜାଣନ୍ତି ଯେ ଦୂରଦର୍ଶନ ବିଜ୍ଞାପନ ଦ୍ୱାରା ସଂଗୃହୀତ ଅର୍ଥଦ୍ୱାରା ହିଁ ଚଳିଥାଏ । ଦୂରଦର୍ଶନର ଅନେକ ଗୁଡ଼ିଏ ବିଜ୍ଞାପନ ନୀତିବିରୋଧୀ ।

ପ୍ରତ୍ୟେକ ପଦାର୍ଥର ବିନିମୟ ମୂଲ୍ୟ ରହିଲେ କିଛି କ୍ଷତି ନାହିଁ ଯଦି ତାହାର ଗୋଟିଏ ବ୍ୟବହାରିକ ମୂଲ୍ୟ ରହିବ । କିନ୍ତୁ ପ୍ରତିଟି ପଦାର୍ଥର କଣ ବ୍ୟବହାରିକ ମୂଲ୍ୟ ବା କଲ୍ୟାଣକାରୀ ମୂଲ୍ୟ ଅଛି କି ? ବହୁତଗୁଡ଼ିଏ ପଦାର୍ଥ ଯାହାକି ଆପଣ କିଣିବାପାଇଁ ପ୍ରଲୁବ୍ଧ ହୁଅନ୍ତି ତାହାର କଲ୍ୟାଣକାରୀ ମୂଲ୍ୟ ବହୁତ କମ୍ ବା ଶୂନ୍ୟ । ସେ ଯାହାହେଉ ଯେଉଁ ପ୍ରଣାଳୀରେ ଉତ୍ପାଦନ ଓ ଲାଭାଂଶରେ ଚଳିବାକୁ ପଡ଼େ, ଯେଉଁଠାରେ ପୁଣି ଏହି ଅଭିବୃଦ୍ଧି କ୍ରମବର୍ଦ୍ଧିଷ୍ଣୁ, ସେଠାରେ ଉତ୍ପାଦନର ଅପଚୟ ଘଟିବ ହିଁ ଘଟିବ ।

## ଧନୀ ଦରିଦ୍ର ବିଷମତା

ଏଭଳି ଉତ୍ପାଦନ ଓ ବିନିମୟ ପ୍ରକ୍ରିୟାର ଫଳ ହେଉଛି ଧନୀ ଓ ଦରିଦ୍ର ମାନଙ୍କ ମଧ୍ୟରେ ବୈଷମ୍ୟର ବୃଦ୍ଧି, ଏହା କେବଳ ଗୋଟିଏ ଦେଶ ମଧ୍ୟରେ ଆବଦ୍ଧ ନୁହେଁ, ଏହା ଦେଶ ଦେଶ ମଧ୍ୟରେ ମଧ୍ୟ ସ୍ପଷ୍ଟ । ଯଦି ସାରା ବିଶ୍ୱର ହିସାବ ନିଆଯାଏ ତେବେ ଏ କଥା ଭଲ ଭାବରେ ଲକ୍ଷ୍ୟ କରିହେବ ଯେ କାରିଗରୀ ବିଦ୍ୟାରେ ଉନ୍ନତ ରାଷ୍ଟ୍ର ଓ ଉନ୍ନତଶୀଳ ଓ ଦରିଦ୍ରରାଷ୍ଟ୍ରଗୁଡ଼ିକ ମଧ୍ୟରେ ରହିଥିବା ଫାଙ୍କ ଅତି ଦ୍ରୁତ ଗତିରେ ବଢ଼ି ଚାଲିଛି । ଉଦାହରଣ ସ୍ୱରୂପ ୧୯୬୦ ମସିହାରେ ଉନ୍ନତ ରାଷ୍ଟ୍ରଗୁଡ଼ିକରେ ମୁଣ୍ଡପିଛା ଆୟ କମ୍ ଉନ୍ନତ ରାଷ୍ଟ୍ରମାନଙ୍କ ତୁଳନାରେ ୯ ଗୁଣ ଅଧିକ ଥିଲା । ୧୯୯୦ ରେ ଏହା ୧୨ ଗୁଣ ହୋଇଛି ।

ଭାରତରେ ମଧ୍ୟ ଧନୀକ ଗୋଷ୍ଠୀ ଅଧିକ ଧନୀ ଓ ଦରିଦ୍ର ଗୋଷ୍ଠୀ ଅଧିକ ଦରିଦ୍ର ହେଉଥିବାର ଲକ୍ଷ୍ୟ କରାଯାଇଛି । ଅବଶ୍ୟ ଭାରତରେ ମଧ୍ୟବିତ୍ତ ଶ୍ରେଣୀର ବେଶ୍ କିଛି ଲୋକ ଅଛନ୍ତି । ଯେଉଁମାନେ ଅତ୍ୟଧିକ ଧନୀ ନ ହେଲେ ମଧ୍ୟ ସେମାନଙ୍କୁ ଧନୀକ ଭାବରେ ଗ୍ରହଣ କରାଯାଇପାରେ । ସେମାନେ ଆମେରିକୀୟ ଓ ଜାପାନୀଙ୍କ ଭଳି ଅତ୍ୟଧିକ ଖିଆଲି । ସେମାନଙ୍କର ଲୋଭ ଓ ଲାଳସାର କୌଣସି ସୀମା ନାହିଁ । ସେମାନେ ନିଜ ମାତୃଭୂମିକୁ ମଧ୍ୟ ବିକ୍ରୀ କରିବାକୁ ପ୍ରସ୍ତୁତ କାରଣ ଯାହାଇଛା ତାହା ଉପଭୋଗ କରିବାପାଇଁ ବିଶ୍ୱ ସେମାନଙ୍କୁ ସୁଯୋଗ ଦେଇଛି । ଏହାଦ୍ୱାରା ସେମାନେ ସୁନ୍ଦର ଜୀବନ ଯାପନ କରିପାରିବେ । ଯଦି ଆମ ଦେଶର ନୀତିଗୁଡିକ କଲ୍ୟାଣକାରୀ ନ ହୋଇ ମୁନାଫା ସର୍ବସ୍ୱ ହୁଏ ତାହାର ଫଳ ହୁଏ ଏକ କଷ୍ଟକର ଜୀବନ । ମୁନାଫା ଓ ଜନକଲ୍ୟାଣ ସବୁବେଳେ ପରସ୍ପର ବିରୋଧୀ ।

## ପ୍ରାକୃତିକ ସଂପଦର ଅପଚୟ

ଗୋଟିଏ ସାଧାରଣ ଆମେରିକୀୟ ପରିବାର ଯେଉଁଥିରେ କି ବାପା, ମା ଓ ଗୋଟିଏ ସନ୍ତାନ ଥାଆନ୍ତି ୨।୩ଟି ଟେଲିଭିଜନ୍ ୨।୩ଟି ଟେଲିଫୋନ୍, ୬।୭ଟି ରେଡ଼ିଓ; ୧।୨ଟି କାର୍ ଏଭଳି ଅନେକ ଜିନିଷ ବ୍ୟବହାର କରିଥାନ୍ତି । ଆମ୍ଭମାନଙ୍କ ସମ୍ବଳ ଯଦି ଏହିଭଳି ଉପଭୋଗ କରାଯାଏ ତେବେ ସାରବିଶ୍ୱର ସମ୍ବଳ ଶେଷ ହେବାକୁ ଖୁବ୍ କମ୍‌ସମୟ ଲାଗିବ । ଅତ୍ୟଧିକ ବ୍ୟବହାର ବା ଉପଭୋଗ ପଛରେ ୨ କାରଣ ଥାଏ —

* ମୁନାଫା ପାଇବା ପାଇଁ ଏବଂ କୌଣସି କଲ୍ୟାଣକାରୀ ଉଦ୍ଦେଶ୍ୟ ନ ଥାଇ ଗୁଡ଼ାଏ ଉପଭୋକ୍ତା ଦ୍ରବ୍ୟର ଉତ୍ପାଦନ ।

ଏହା ଏକ ଅଚିନ୍ତନୀୟ ଏବଂ ହାସ୍ୟାସ୍ପଦ ସୀମାଯାଏ ବ୍ୟାପିପାରେ— ଅର୍ଥାତ୍ ଗୋଟିଏ ପଦାର୍ଥର ଉତ୍ପାଦନ ପାଇଁ ପ୍ରାକୃତିକ ସମ୍ବଳକୁ ବିଭକ୍ତ କରିବା ଏବଂ ଆଉ ଗୋଟିଏ ପଦାର୍ଥ ପାଇଁ ତାକୁ ଯୋଡିବା ।

ଏପରି ଅପଚୟକାରୀ ଚକ୍ର ଯୋଗୁଁ ପ୍ରତ୍ୟେକଟି ପର୍ଯ୍ୟାୟରେ କିଛି ଲୋକ ଲାଭ କରୁଛନ୍ତି କିନ୍ତୁ ପୃଥିବୀ ତାର ପ୍ରାକୃତିକ ସଂପଦ ହରାଇ ବସୁଛି ।

## ଅସ୍ତ୍ରଶସ୍ତ୍ର ଓ ସାମରିକ ଉପାଦାନ

ଏହାର ଉତ୍ପାଦନ ଯୋଗୁଁ ଅଧୁନା ମାନବ ଜାତି ଅନ୍ୟ ସମସ୍ତ ପ୍ରାଣୀ

ଜଗତଠାରୁ ନିରାପଦ ମଣୁଛି । ପଶୁମାନଙ୍କ ଠାରୁ ନିରାପଦ ରହିବା ପାଇଁ ମଣିଷ ଖୁବ୍ କମ୍ ଅସ୍ତ୍ର ଦରକାର କରୁଛି ବରଂ ଅସ୍ତ୍ରଶସ୍ତ୍ର ମଣିଷକୁ ଅନ୍ୟ ମଣିଷଠାରୁ ନିଜକୁ ରକ୍ଷା କରିବାପାଇଁ ତଥା ଅନ୍ୟମାନଙ୍କୁ ଆକ୍ରମଣ କରିବା ଉଦ୍ଦେଶ୍ୟରେ ବ୍ୟବହାର ହେଉଛି । ଏସବୁର କାରଣ ହେଉଛି କିଛି ମଣିଷ ସବୁ ପଦାର୍ଥରୁ ଅଧିକରୁ ଅଧିକ ପାଇବା ପାଇଁ ଉଦ୍ୟମରତ ଏବଂ ସେଥିପାଇଁ ପ୍ରୟୋଜନ ହେଲେ ସେମାନେ ବଳପ୍ରୟୋଗ କରିବା ପାଇଁ ମଧ୍ୟ ପଶ୍ଚାତପଦ ହେଉନାହାନ୍ତି । ଏହା ଠିକ୍ କି ଆମି ?

## ପରିବେଶ ଧ୍ୱଂସ

ମାନବ ଇତିହାସରେ ଏଭଳି ଏକ ସମୟ ଥିଲା ଯେତେବେଳେ ମଣିଷ ପ୍ରାକୃତିକ ଶକ୍ତି ନିକଟରେ ଗୋଟିଏ କ୍ଷୁଦ୍ରାତିକ୍ଷୁଦ୍ର ପଦାର୍ଥ ଥିଲା । ସେ ଭୂପୃଷ୍ଠରେ ଯେଉଁ କ୍ଷୁଦ୍ର ପରିମାଣର ଖନନ ବା ଗମ୍ଭୁଡ଼ା ଚିହ୍ନ ରଖୁଥିଲା, ତାହା ଆପେ ଆପେ ଭରି ହୋଇ ଯାଉଥିଲା । କିନ୍ତୁ ବର୍ତ୍ତମାନ ପରିସ୍ଥିତି ବଦଳିଯାଇଛି । ଅଧୁନା ମାନବ ପୃଥିବୀ ପୃଷ୍ଠରେ ଅପରିବର୍ତ୍ତନୀୟ ପରିବର୍ତ୍ତନ ଘଟାଇପାରେ । ଏହି ପରିବର୍ତ୍ତନ ଜୀବନ ପାଇଁ ଉପଯୋଗୀ ନୁହେଁ, ବାୟୁମଣ୍ଡଳରେ ନିର୍ଗତ ଗ୍ୟାସ୍ (green house gases) ବିଶେଷତଃ ଅଙ୍ଗାରକାମ୍ଳ ଯାହାକି କଳ କାରଖାନା, ଯାନବାହାନ, ଓଜନ ସ୍ତରର ହ୍ରାସ, 'ରେଡ଼ିଓ ଆକ୍‌ଟିଭ୍ ପଦାର୍ଥ, ଜଳ ଓ ବାୟୁର ପ୍ରଦୂଷଣ—ଏସବୁ । ଏ ପୃଥିବୀ କ୍ରମଶଃ ବାସୋନୁପଯୋଗୀ ହେଉଛି ଏବଂ ଭବିଷ୍ୟତରେ ମଧ୍ୟ ସମ୍ପୂର୍ଣ୍ଣ ରୂପେ ବାସୋନୁପଯୋଗୀ ହୋଇଯିବ । ଭାରସାମ୍ୟ ବା ସନ୍ତୁଳନ ବର୍ତ୍ତମାନ ମୁଖ୍ୟ ପ୍ରଶ୍ନ ହୋଇଯାଇଛି । ରିଓ ଠାରେ ଅନୁଷ୍ଠିତ ଧରିତ୍ରୀ ସମ୍ମିଳନୀ ଏହି ପରିସ୍ଥିତି ପାଇଁ ଗୋଟିଏ ଉପଯୁକ୍ତ ଜବାବ ଥିଲା, କିନ୍ତୁ ଏଭଳି ପରିବେଶଗତ ବିଭୀଷିକାର କାରଣଗୁଡ଼ିକୁ ବାହାର କରି ତାହାର ସମାଧାନ ବିଷୟରେ ଏହି ସମାବେଶରେ ଆଲୋଚିତ ହୋଇ ନଥିଲା । ଏହା ପରିବର୍ତ୍ତେ ପରିବେଶର ବିଭୀଷିକାର ଶିକାର ହୋଇଥିବା ପାପୀରୂପେ ଚିତ୍ରଣ କରାଯାଇଥିଲା । ଉନ୍ନତ ରାଷ୍ଟ୍ରମାନେ ଉନ୍ନତଶୀଳ ରାଷ୍ଟ୍ରଗୁଡ଼ିକର ଜନସଂଖ୍ୟା ଓ ଏହାର ବୃଦ୍ଧିକୁ ଦୋଷ ଦେଇ ଏହା ହିଁ ସାରା ବିଶ୍ୱରେ ଘଟୁଥିବା ପରିବେଶ ଅବକ୍ଷୟର କାରଣ ବୋଲି ଦର୍ଶାଇଥିଲେ । ଏହା ସତ୍ୟର ଅପଳାପ କେବଳ ନୁହେଁ ଏକ ଚିନ୍ତା ବିଭ୍ରାଟ ମଧ୍ୟ ।

ଜୀବନର 'ମୌଳିକ ଚରିତ୍ର ହେଲା ମୃତ୍ୟୁକୁ ପ୍ରତିରୋଧ କରିବା । ସନ୍ତାନ

ଉତ୍ପାଦନ କରିବା ଓ ଜନ ସଂଖ୍ୟା ବୃଦ୍ଧି କରିବା । ଏହା ସତ୍ୟ ଯେ ଜନସଂଖ୍ୟା ବୃଦ୍ଧି କରିବାର ମଧ୍ୟ ଗୋଟିଏ ସୀମା ରହିବା ଦରକାର । ଜନ ସଂଖ୍ୟାର ବୃଦ୍ଧି ଫଳରେ ଖାଦ୍ୟାଭାବ ତଥା ମନସ୍ତାତ୍ତ୍ୱିକ ଯନ୍ତ୍ରଣା ଜନିତ ପ୍ରାଣୀମାନଙ୍କର ସ୍ୱାଭାବଗତ ବ୍ୟବହାରର ବିନାଶ ଘଟାଇପାରେ । ଯାହାକି ହଜାର ହଜାର ବର୍ଷ ଧରି କେବଳ ସଂଗ୍ରାମ ବଳରେ ହିଁ ସମ୍ଭବ ହୋଇଥିଲା । ବର୍ତ୍ତମାନ ପ୍ରଶ୍ନ ହେଉଛି ବର୍ତ୍ତମାନର ମନୁଷ୍ୟ ସଂଖ୍ୟା କଣ ଏତେ ବେଶୀ ଯେ ଏହା ବିପଜ୍ଜନକ ଅବସ୍ଥାନ ପାଖାପାଖି ହୋଇଛି ? ଏହାର ଉତ୍ତର ହେଲା ଗୋଟିଏ ଶବ୍ଦ 'ନା' ।"

କଥାଟି ହେଉଛି ଆମ୍ଭେମାନେ ଯଦି ଆମର ସମାଜଗୁଡ଼ିକ ଟିକିଏ ବିଜ୍ଞାନ ସମ୍ମତ ଓ ମାନବିକତା ସହକାରେ ପରିଚାଳନା କରୁ ତା'ହେଲେ ବର୍ତ୍ତମାନର ବିଶ୍ୱ ଜନ ସଂଖ୍ୟାର ୨।୩ ଗୁଣ ଅଧିକ ଲୋକଙ୍କୁ ଆମେ ଧରିରଖିପାରିବା । ଆମ୍ଭେମାନେ ଗୋଟିଏ ଗୁଣାତ୍ମକ ଜୀବନ ଏବଂ ୭୫ ରୁ ୮୦ ବର୍ଷ ବଞ୍ଚିବାର ଜୀବନ ଆଶା ନେଇ ବଞ୍ଚିପାରିବା ।

ସମାଜ ଗଠନରେ ରହିଥିବା ତ୍ରୁଟି ଉନ୍ନୟନ ସହିତ ଉପଭୋକ୍ତାବାଦକୁ ଯୋଡ଼ିବା ଅଧିକ ଉତ୍ପାଦନକୁ ପ୍ରୋତ୍ସାହିତ କରୁଥିବା ଭଳି ଅର୍ଥନୈତିକ ବ୍ୟବସ୍ଥା ଅମଙ୍ଗଳକାରୀ ଉତ୍ପାଦନ ବ୍ୟବସ୍ଥା ଏବଂ ସମ୍ବଳର ଅପଚୟ ଏସବୁକୁ ବନ୍ଦ କରିବାକୁ ହେବ । ଏହାକୁ କିନ୍ତୁ ଶିଳ୍ପୋନ୍ନତ ରାଷ୍ଟ୍ରମାନେ ବିରୋଧ କରୁଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ସେମାନେ ହିଁ ପାପୀ । ପାପୀ ଶିଳ୍ପୋନ୍ନତ ରାଷ୍ଟ୍ରର ନୀତିକୁ ସମର୍ଥନ କରୁଥିବା ଦେଶମାନେ ଏହାରି ଫଳରେ ଗରୀବ ଦେଶମାନେ ଦୁଃଖ ଓ କଷଣ ଭୋଗୁଛନ୍ତି । ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ କିନ୍ତୁ ଉପଭୋଗ କରିବାରେ ବ୍ୟସ୍ତ ।

—୦—

**ପ୍ରକାଶକ—**

ହମାର ଦେଶ ପ୍ରୋଗ୍ରାମ୍ କମିଟି, ଓଡ଼ିଶା
ଏ/୧୨, (HIG) ବରମୁଣ୍ଡା ହାଉସିଂବୋର୍ଡ କଲୋନୀ, ଭୁବନେଶ୍ୱର
ଫୋନ୍—୪୦୦୮୯୧

**Printed at-**

SRI GURU GOURANGA PRESS
NAYAPALLI, BHUBANESWAR-751 012
Phone-55517

Contribution Price-Rs 2/-

# ଆମ ସମାଜ

ହମାରା ଦେଶ



## ଆଲୋଚନା ମାଳା

ପ୍ରସ୍ତୁତି -

ସର୍ବଭାରତୀୟ ଜ୍ଞାନ ବିଜ୍ଞାନ ସଂଗଠନ

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା

ଏ/୧୨ (HIG) ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ,

ଭୁବନେଶ୍ୱର -୭୫୧ ୦୦୩

# ଆମ ସମାଜ

ବଡ଼ ଖୁସିର କଥା, ଆମେ ସମସ୍ତେ ଏକାଠି ବସିଛେ । ଆଜି ଆମେ ନିଜ ନିଜ ବିଷୟରେ କଥାବାର୍ତ୍ତା ହେବା । ଆମେ କଅଣ ଭାବୁଛେ, ଆମେ ଏ ସମାଜରେ କିପରି ବଞ୍ଚିଛେ, ସେ ସବୁ ବିଷୟରେ ଆଲୋଚନା କରିବା ।

ଆମ ଦେଶ ବର୍ତ୍ତମାନ ବହୁତ ବଡ଼ ବିପଦଦେଇ ଗତି କରୁଛି । ଜଣା ପଡୁଛି ସତେ ଯେପରି ଆମେ ପୁଣି ପରାଧୀନ ହୋଇଯିବା । ଦେଶ ଆଉଥରେ ଭାଗ ଭାଗ ହୋଇଯିବ । କୌଣସିମତେ ଆମକୁ ଏହି ବିପଦରୁ ଦେଶକୁ ରକ୍ଷାକରିବାକୁ ପଡ଼ିବ । ଏ ବିଷୟରେ ଦେଶ ସାରା ଆମେ ଆଲୋଚନା କରି ଲୋକମାନଙ୍କୁ ସଚେତନ କରାଇବା । ସବୁକଥାତ ଆଜି ଅଲୋଚନା କରିପାରିବାନି । ତଥାପି ଆମ ନିଜ ବିଷୟରେ, ଆମ ଜୀବନ ବିଷୟରେ କିଛି କଥାବାର୍ତ୍ତା କରିବା, ସବୁକଥା ବୁଝିବାକୁ ଚେଷ୍ଟା କରିବା ।

ନିଜକୁ ପ୍ରଶ୍ନ ପଚ୍ଚରିବା । ଆମେ କଅଣ ସୁଖରେ ଅଛୁ ? ସମାଜରେ ଯେମିତି ଆମ ଘର ଲୋକେ, ବନ୍ଧୁ ବାନ୍ଧବ , ସାଙ୍ଗ ସାଥିମାନେ କ'ଣ ଖୁସିରେ ଅଛନ୍ତି ? ସବୁ ଚ୍ଚଲିଛି, ସେ ବିଷୟରେ ଆମେ କଅଣ ସନ୍ତୁଷ୍ଟ ? ସତରେ କହିବାକୁ ଗଲେ, କେହି ବି ଖୁସିରେ ନାହାଁନ୍ତି , କେହିବି ସନ୍ତୁଷ୍ଟ ନୁହଁନ୍ତି । ଆମେ ଯାହା ପାଇବାକୁ ଇଚ୍ଛା କରୁଛୁ, ସେସବୁ ମିଳୁନି । ଭବିଷ୍ୟତରେ ମିଳିବ ବୋଲି ଆଶା ନାହିଁ । ଆମେ ଆକାଶ କଇଁଆ କି ଚିଲିକା ମାଛ ମାଗୁନୁ । ମାଂସ ପଲଉର ଭୋଜିପାଇଁ ଆମର ଲାଳସା ନାହିଁ । ମୁଠିଏ ଭାତ କିମ୍ବା ଦି'ପଟ ରୋଟି ଆଉ ଡ଼ାଲିଟିକିଏ ଆମର ଦରକାର । ବହଳିଆ ଡ଼ାଲି କଥାଛାଡ଼, ପାଣିଆ ଡ଼ାଲିଟିକିଏ ମିଳିଲେ ବି ଯଥେଷ୍ଟ । ଆମପାଇଁ ଏତିକି ମିଳୁନି । ମାଘମାସର ହାଡ଼ଭଙ୍ଗା ଶୀତ କାକରରେ ଘୋଡ଼େଇ ହେବାପାଇଁ ଚ୍ଚଦର ଖଣ୍ଡି ନାହିଁ । ଆମ ଭଳି ଏଦେଶସାରା ହଜାର ହଜାର ଭାଇଭଉଣୀ ଏଇ ଅବସ୍ଥାରେ ଅଛନ୍ତି । ମୁଣ୍ଡ ଗୁଞ୍ଜିବାପାଇଁ ଆମର ଚାଳଘର ଖଣ୍ଡିଏ ବି ନାହିଁ । ଘୁଷୁରି ଗୁହାଳ ପରି ଆମ ଘରଦ୍ୱାର । ଗାଁ ମୁଣ୍ଡରେ ଗୋରଚ୍ଚନ୍ଦ ବାବୁଙ୍କର କୋଠାଘର । ଟାଉନ ବଜାରରେ ଏମିତି ଅନେକ ରାଜପ୍ରାସାଦ ଭଳି କୋଠାମାନ ଅଛି । ଏଭଳି ବଡ଼ ବଡ଼ କୋଠା ଘର ଆମର ଲୋଡ଼ା ନାହିଁ । ସାରାଜୀବନ ତପସ୍ୟାକଲେ ବି ଏଭଳି ଘର ଆମକୁ ମିଳିପାରିବ ନାହିଁ ।

ଆମ ପାଇଁ ଛୋଟିଆ ଚ୍ଚଳ ଘରଖଣ୍ଡିଏ ଦରକାର । ଏହି ଘରଟିକୁ ଆମେ ଆମର ବୋଲି କହିପାରିବୁ, ଆଉ ଭଲ ପାଇପାରିବୁ । ଆମ ଘରଟି ଚକ୍ ଚକିଆ

ନ ହେଲେବି ସଫାସୁତରା ହୋଇଥିବ । ଘର ଚ୍ୱରିପାଖ ନିର୍ମଳ ଥିବ । ଘର ସାଙ୍ଗକୁ ପିଲା ପିଲି ସୁଘରେ ରହିବା ଆବଶ୍ୟକ । ଏଥିପାଇଁ ଆମେ ବେଶି କିଛି ମାଗୁନୁ । ଖାଇବାକୁ ଦାନା, ପିନ୍ଧିବାକୁ କନା ଆଉ ମୁଣ୍ଡ ଗୁଞ୍ଜିବାପାଇଁ ଘର ଖଣ୍ଡିଏ ଲୋଡ଼ା । ବର୍ତ୍ତମାନ ଏସବୁ ଆମପାଇଁ ଦୁର୍ଲ୍ଲଭ । ଆସନ୍ତାକାଲି ବି ଏସବୁ ଆମପାଇଁ ଦୁର୍ଲ୍ଲଭ ହୋଇ ରହିଥିବ ବୋଲି ଆମର ବିଶ୍ୱାସ । କହିବାକୁ ଗଲେ, ଆମେ କେବଳ ଆଜିପାଇଁ ବଞ୍ଚିଛୁ । ଆମେ ଖୁସି ଯେ ଗତ କାଲି ଚ୍ୱଲିଯାଇଛି । ଆସନ୍ତା କାଲି କଥା ଭାବିଲେ ଭାରି ଡ଼ର ମାଡ଼ୁଛି ।

ଆମ ପିଲାମାନେ ଆମ ପାଇଁ ଭାରିପ୍ରିୟ । ଆମେ ସେମାନଙ୍କୁ ଭଲପାଇବା ଓ ଗେଲ କରିବା ଛଡ଼ା ଆଉ କଅଣ ଦେଇ ପାରୁଛୁ ? ଭୋକ ଉପାସରେ ସେମାନଙ୍କ ପେଟ ଜଳିଯାଉଛି । ପିନ୍ଧିବା ଜାମା ସବୁ ଫାଟି ଗଲାଣି । ତାଳି ପକାଇ ଚଳେଇନେବା କଥା । ସେମାନେ ସ୍କୁଲକୁ ଯାଉନାହାଁନ୍ତି । ସେମାନଙ୍କୁ ସ୍କୁଲକୁ ପଠାଇବାପାଇଁ ହାତରେ ଧନ ବି ନାହିଁ ।

ବଢ଼ିଆ ବଢ଼ିଆ ସ୍କୁଲସବୁ ଅଛି । ଭାଗ୍ୟବାନ ପିଲାମାନେ ସେଠାରେ ପଢୁଛନ୍ତି । ସ୍କୁଲ ଦରମା, ସ୍କୁଲ ପୋଷାକ ପତ୍ର, ବହିପତ୍ର ଆଜି ଯୋଗାଇ ଦେବାପାଇଁ ସୋମାନଙ୍କର ଘରେ ଅଭାବ ନାହିଁ । ମାଗଣାରେ ପଢ଼ାଇବା ପାଇଁ ବି ଆମ ଗାଁ ମାନଙ୍କରେ ସରକାରୀ ସ୍କୁଲସବୁ ଅଛି । ମାତ୍ର ସେଠାରେ ଆମ ପିଲାମାନେ ପଢ଼ିପାରୁନାହାନ୍ତି । ଆମ ପିଲାଙ୍କର ଛିଣ୍ଡା ମଇଳା ଜାମାପେଣ୍ଟ ଦେଖି, ଅନ୍ୟ ପିଲାମାନେ , ଏପରିକି ପଢ଼ାଉଥିବା ଶିକ୍ଷକ ଘୃଣା କରୁଛନ୍ତି । ବହି ସିଲଟ ଯୋଗାଇ ଦେବାପାଇଁ ଆମ ପାଖରେ ପଇସା ନାହିଁ ।

ଆମ ଭିତରୁ ଅନେକ ଚ୍ୱହାଁନ୍ତି, ପିଲାମାନେ ପାଖରେ ରହନ୍ତୁ । ଛୋଟ ମୋଟ କାମଦାମ କରି ଘରପାଇଁ ବି ପଇସା ରୋଜଗାର କରନ୍ତୁ । କିଛି ନହେଲେ, ସାନ ପିଲାଟିକୁ ଧରିଲେ, ମା କାମ-ଦାମକୁ ଯାଇପାରିବ ବୋଲି ଅନେକ ଭାବନ୍ତି ।

ସ୍କୁଲମାନଙ୍କରେ ରଙ୍ଗ ରଙ୍ଗିଆ, ସଫା ପୋଷାକ ପିନ୍ଧି ପିଲାଗୁଡ଼ିକ, ଯେତେବେଳେ ଗୁଲୁଗୁ ଗାଲର ହୋଇ ବୁଲୁଥାନ୍ତି, କି ଗୀତ ଗାଉଥାନ୍ତି, ଭାରି ଖୁସି ଲାଗେ । ମନେହୁଏ ସତେଯେପରି ସ୍ୱର୍ଗପୁରରୁ ସାନ ସାନ ଦେବ ଦୂତମାନେ ଆସି ମର୍ତ୍ତରେ ବୁଲୁଛନ୍ତି । ଏସବୁ ଦେଖି ନିଜ ପିଲାପିଲିଙ୍କ କଥା ଭାବିଲାବେଳେ ଛାତି ଭିତରଟା କଅଣ ହୋଇଯାଏ । ଆମେ ବି ଚ୍ୱହୁଁ , ଆମ ପିଲାମାନେ ଏମିତି ଖୁସି ବାସିରେ ପାଠପଢ଼ନ୍ତୁ, ସୁନ୍ଦର ଦିଶନ୍ତୁ । ଏଇଟା ଆମପାଇଁ ଅସମ୍ଭବ ବୋଲି ମନେ ହୁଏ ।

''କିନ୍ତୁ ଅସଲ କଥାହେଲା ଯେ, ଏଇଟା ଏ ସମାଜପାଇଁ ଆଦୌ ଅସମ୍ଭବ କାମ ନୁହେଁ ।''

ସୋଭିଏତ ୟୁନିୟନ ବୋଲି ଗୋଟିଏ ଦେଶ ଥିଲା । (ଦୁର୍ଭାଗ୍ୟର କଥା, ଏ ଦେଶଟି ଏବେ ଭାଗ ଭାଗ ହୋଇଗଲା, ଗରୀବ ହୋଇଗଲା) ।ସେଠାରେ ସମସ୍ତେ ଭଲ ରୋଜଗାର କରୁଥିଲେ, ଖାଇବା, ପିନ୍ଧିବା, ରହିବାର ଅଭାବ ନଥିଲା । କାଲି କଅଣ ଖାଇବାକୁ ହେବ, ଏଥିପାଇଁ କାହାକୁ ଚିନ୍ତା କରିବାକୁ ପଡୁନଥିଲା । ଦେଶର ଲୋକମାନଙ୍କ ପାଇଁ ଭବିଷ୍ୟତ ପୂରାପୂରି ସୁରକ୍ଷିତ ରହୁଥିଲା ।ପିଲାମାନେ ଭାରି ସୁସ୍ଥ ସବଳିଆ ହୋଇ ବଢୁଥିଲେ । କହିବାକୁଗଲେ, ଦେଶଟି ଥିଲା ପିଲାମାନଙ୍କପାଇଁ ସ୍ୱର୍ଗର ନନ୍ଦନ କାନନ ।ସୋଭିଏତ ୟୁନିୟନ ପରି ଅନେକ ସମାଜବାଦୀ ଦେଶରେ ଏହିପରି ସବୁ ଭଲରେ ଚଳୁଥିଲେ । ଆଜି ଏଇ ଦେଶମାନଙ୍କରେ ସବୁ କିଛି ବଦଳିଯାଇଛି । ବର୍ତ୍ତମାନ ବେକାରୀ ବଢ଼ିଗଲାଣି । ନାନା ପ୍ରକାରର ଅଭାବ ଦେଖାଦେଲାଣି ।ଏସବୁ ସତ୍ତ୍ୱେ ଏ ଦେଶମାନଙ୍କରୁ ଆମକୁ ଅନେକ କିଛି ଶିଖିବାର ଅଛି । ସେମାନେ ଦାରିଦ୍ର୍ୟ ହଟାଇପାରିଥିଲେ, ସମସ୍ତଙ୍କପାଇଁ ମୌଳିକ ସୁଖ ସୁବିଧା ଯୋଗାଇ ପାରିଥିଲେ । ଆମେ ଇଚ୍ଛାକେଲେ, ଏ ଦେଶମାନଙ୍କର ଅନୁଭୂତିରୁ ଶିଖି, ଆମ ଦେଶରେ ଥିବା ଦାରିଦ୍ର୍ୟର କାରଣଗୁଡ଼ିକୁ ଉପାଡ଼ି ଫୋପାଡ଼ି ଦେଇପାରିବା । ଆମପିଲାଙ୍କପାଇଁ ଆମ ଦେଶଟିକୁ ସ୍ୱର୍ଗରେ ପରିଣତ କରି ଦେଇପାରିବା । କିନ୍ତୁ ଏଥିପାଇଁ ଆମକୁ ଶପଥ କରିବାକୁ ପଡ଼ିବ । ବହୁତ ପରିଶ୍ରମ ଓ ଉଦ୍ୟମ କରିବାକୁ ପଡ଼ିବ ।

ସବୁଆଡ଼କୁ ଲକ୍ଷ୍ୟକଲାବେଳେ ଆଜି ବଡ଼ ନିରାଶ ଲାଗୁଛି । ଆମମାନଙ୍କ ଭିତରୁ କାହାଘରେ ଚୁଲି ଜଳୁନିତ ଆଉ କାହା ଘରେ ଘିଅ ଦହିରେ ଭାସୁଛି ।ଯେଉଁ ରାମ ରାଜ୍ୟର ସ୍ୱପ୍ନ ଦେଖି ଆମ ବାପା ଅଜା ଇଂରେଜ ବିରୋଧରେ ସଂଗ୍ରାମ କରି ଏଦେଶକୁ ସ୍ୱାଧୀନ କଲେ, ସେ ରାମରାଜ୍ୟ ବହୁ ଦୂରରେ ରହିଯାଇଛି । ଜମିନଥିବା ଲୋକ ଜମି ଥିବା ଲୋକପାଖରେ କାମ କରି ପେଟ ପୋଷୁଛି । ତା ଝାଳବୁହା ପରିଶ୍ରମରେ ଫସଲ ଅମଳ ହେଉଛି । କିନ୍ତୁ ସେ ଫସଲକୁ ଭୋଗ କରିପାରୁନି । ଯା'ର ଜମି ସେ ଫସଲକୁ ଜମା କରିରଖୁଛି, ଖାଇ ମଉଜ କରୁଛି, ବଳକାତକ ବିକ୍ରିକରି ଟଙ୍କା ପଇସା ଆକାରରେ ସଞ୍ଚୟ କରୁଛି ।ପରିଶ୍ରମ କରିଥିବା ଲୋକ ପେଟ ପୂରା ଖାଇବାକୁ ପାଉନି । ପାଟି ଖୋଲି ପଗ୍ଭରିବାକୁ ସାହାସ ହେଉନି । ଜମି ବଣ୍ଟନ ବିଷୟରେ ନୂଆ ସଂସ୍କାର କଥା କୁହାଯାଉଥିଲା । ମାତ୍ର ଏ ପର୍ଯ୍ୟନ୍ତ ସେସବୁ କିଛି ଜଣାପଡ଼ିଲାନି । ଗରୀବ ଲୋକମାନଙ୍କର ଉପକାର ପାଇଁ ସରକାର କେତେ

ରକମର କାର୍ଯ୍ୟକ୍ରମ ଆରମ୍ଭ କଲେ । କିନ୍ତୁ ଦେଖିଲାବେଳକୁ ସବୁ ତେଲିଆ ମୁଣ୍ଡରେ ତେଲ । ଯିଏ ମାରିନେବାର କଥା ସିଏ ମାରିନେଲେ । ଏକଥା ସରକାରଙ୍କ ସମେତ ସମସ୍ତେ ଜାଣନ୍ତି । ମାତ୍ର କିଛି ହେଉନି । ସରକାର ସର୍ବନିମ୍ନ ମଜୁରି ବିଲ୍ ମଞ୍ଜୁର କରି ବହୁତ ଭଲ କାମ କଲେ । କିନ୍ତୁ ସେସବୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ ହୋଇପାରିନି । ସାହାସ କରି ଏ ବିଷୟ ପଗ୍ଚରିଲେ, ବେଖାତିରି କରି କଥାଟାକୁ ଉଡ଼ାଇ ଦିଆଯାଉଛି । ବେଳେବେଳେ ଆମକୁ ସଂଗଠିତ ହୋଇ ଲଢ଼ିବାକୁ କୁହାଯାଉଛି । ସେପରି କରିବାକୁ ଆରମ୍ଭ କଲେ ଆମପଛରେ ଗୁଣ୍ଡା ଲାଗିଯାଉଛନ୍ତି । ଆମକୁ ପିଟି ପିଟି ସାବାଡ଼ କରିଦିଆଯିବ ବୋଲି ଧମକ ଦିଆହେଉଛି । ଘରବାଡ଼ି ପୋଡ଼ି ଜଳାଇଦିଆଯିବ ବୋଲି କୁହାଯାଉଛି । ବେଳେବେଳେ ଅନେକ ଜାଗାରେ ଏଭଳି ଅଘଟଣ ସବୁ ଘଟୁଛି ।

ଗୋବରା ସେଦିନ ସାହାଯ୍ୟପାଇଁ ପଗ୍ଚରିବାକୁ ଗଲା । ରାମହରି ବାବୁ ବଡ଼ ଶରଧାରେ ଗୋବରାକୁ କହିଲେ, " ଗୋବରା, ତୋର ଚିନ୍ତା କଅଣ? ତୁମ ଗିରିଜନ ହରିଜନ ସଂପ୍ରଦାୟର ଲୋକ । ତୁମ ପାଇଁ ସରକାରଙ୍କର କେତେ କେତେ ଯୋଜନା ରହିଛି । ସବୁଠି ଟଙ୍କା ପଇସା ଭର୍ତ୍ତି । ଗୋବରା ଖୁସି ହୋଇ ରାମହରିବାବୁଙ୍କ କଥା ଅନୁସାରେ କାଗଜ ପତ୍ର କାମ କଲା । ହେଲେ ତାକୁ କିଛି ମଳିଲାନାହିଁ । ମଝିରେ ଆଉଜଣେ ମାରିନେଲେ । ଗୋବରା କାକୁତି ମିନତି ହୋଇ ଅନେକ ନେହୁରା ହେଲା । ଫଳ କିଛି ହେଲାନି । ଯେତେବେଳେ ନିଜ ଅଧିକାର ବିଷୟରେ ଗୋବରା ଦାବିକଲା, ସେତେବେଳେ ଫଳ ଓଲଟା ହେଲା । ଫାନ୍ଦ ଫାରସାଦି କରି ଗୋବରା ଓ ତା ଭାଇ ଭିତରେ ଗଣ୍ଡୋଗୋଳର ନିଆଁ ଲାଗାଇଦିଆଗଲା । ପରେ ପରେ ଗାଁରେ ସବର୍ଣ୍ଣ ହରିଜନଙ୍କ ଭିତରେ ଗଣ୍ଡଗୋଳ ବଢ଼ିଗ୍ଚଲିଲା ।

ଏମିତି ଦେଶସାରା , ନାନା ରଙ୍ଗର ବାଜେ ନାଟ ତାମସା ଲାଗିଛି । ଭାଇ ଭାଇ ଭିତରେ ଯୁଦ୍ଧ ଗ୍ଚଲିଛି । ଜାତି ଧର୍ମ, ନାଁରେ ବାଦ ବିବାଦ ସୃଷ୍ଟି ହେଉଛି । ଭାଷା ସଂସ୍କୃତିକୁ ନେଇ କଳିଗୋଳ ଲାଗିଛି । ଭଗବାନଙ୍କୁ ଭୁଲି, ପବିତ୍ର, ମନ୍ଦିର ମସ୍‌ଜିଦ୍, ଚର୍ଚ୍ଚ ଗୁରୁଦ୍ୱାର ନାଁରେ ଖଣ୍ଡଯୁଦ୍ଧ ସୃଷ୍ଟି କରାଯାଉଛି । ଏ ମାଟିର ପୁଅ, ଭିଟା ମାଟି ଛାଡ଼ି ଗ୍ଚଲିଯାଉଛି । ପେଟ ପୋଷିବାପାଇଁ ଆଉ କେଉଁଠି ଆଶ୍ରୟ ନେବାକୁ ବାଧ୍ୟ ହେଉଛି ।

ସଂବିଧାନରେ କୁହାଯାଇଛି, ସମସ୍ତେ ପାଠ ପଢ଼ିବେ । ମାତ୍ର ଏ ପର୍ଯ୍ୟନ୍ତ ଆମ ଭଳି ଲକ୍ଷ ଲକ୍ଷ ଜନସାଧାରଣ, ପାଠନପଢ଼ି ମୁର୍ଖ ହୋଇ ରହିଛନ୍ତି । ୧୪ ବର୍ଷ ପର୍ଯ୍ୟନ୍ତ, ସମସ୍ତ ପିଲା, ବାଧ୍ୟତାମୂଳକ ଭାବରେ ପାଠ ପଢ଼ିବେ ବୋଲି ସଂବିଧାନରେ

ଲେଖାଅଛି । କିନ୍ତୁ ଅନେକ ପ୍ରତିଶ୍ରୁତି ପରି ଏହା ପାଣି ଫୋଟକା ପାଲଟିଯାଉଛି ।

ଆମ ପିଲାମାନଙ୍କ ପାଇଁ ସ୍କୁଲ ନାହିଁ । ଆମପାଇଁ ଡ଼ାକ୍ତରଖାନା ନାହିଁ, ଆମ ଗାଁ କୁ ରାସ୍ତାଟିଏ ତିଆରି ହୋଇପାରିଲାନି । ତେବେ ଆମପାଇଁ କଅଣ କରାଯାଇଛି ? କିନ୍ତୁ ଯେଉଁମାନେ ଆଗଚଲା. ସେମାନେ ସବୁକିଛିର ଭାଗୀଦାର । ଆମେ କଅଣ ଏ ଦେଶର ସନ୍ତାନ ନୋହୁଁ ? କଥା କହିଲାବେଳେ ଅନେକ ପଣ୍ଡିତ ସାଜି ବଡ଼ ବଡ଼ କଥା କହୁଛନ୍ତି । କଥାରେ ବାଡ଼ ବତା ଲାଗୁନି । ସମସ୍ତେ କହିବାରେ ଲାଗିଛନ୍ତି ଆମେ ସମସ୍ତେ ଭାରତ ମାତାର ସନ୍ତାନ, ଆମେ ସମସ୍ତେ ଭାଇଭଉଣୀ , ସମସ୍ତେ ଆମେ ଏକ !

ଆମ ଦୁଃଖପାଇଁ ଆମେ କାହା ଆଗରେ ଆପତ୍ତି କରିବା ? ସରକାରଙ୍କ ପାଖରେ ! ଭୋଟ ଦେଇ ଆମେ ସରକାର ଗଢ଼ିଛେ । କନ୍ତୁ ପ୍ରକୃତରେ ଆମେ କଅଣ ଠିକ୍ ଭାବରେ ସରକାର ଗଢ଼ିପାରିଛେ ? ଏବିଷୟରେ ଟିକିଏ ଭଲଭାବରେ ଭାବି ଦେଖିବା ।

ଆମ ଦେଶର ଶାସନ ହେଉଛି, ଗଣତନ୍ତ୍ରର ଶାସନ । ଅର୍ଥାତ ଏହା ଜନ ସାଧାରଣଙ୍କ ତିଆରି ଶାସନ ଓ ଏ ଶାସନ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ । ଏଥିପାଇଁ ଆମେ ଭୋଟ ଦେଇ ନେତା ବାଛୁ । ନେତାମାନେ ମିଶି ସରକାର ଗଢ଼ନ୍ତି । କିନ୍ତୁ ଆମ ଭୋଟ ଦେବାଟା କେତେଦୂର ସାଧୁ ଉପାୟରେ ହେଉଛି, ସେ କଥା ଲକ୍ଷ୍ୟ କରିବା ଆବଶ୍ୟକ । ବିଭିନ୍ନ ରାଜନୈତିକ ଦଳ ନିଜ ନିଜ ବାନା ଉଡ଼ାଇ, ଭୋଟ ପ୍ରଚାର କରିବାପାଇଁ ଆସନ୍ତି । ଆମକୁ ନାନା ଢ଼ଙ୍ଗରେ କଥା କହି ଭୁଲାଇ ପକାନ୍ତି । ପ୍ରତିଶ୍ରୁତି ପରେ ପ୍ରତିଶ୍ରୁତି ଅଜାଡ଼ି ଦିଅନ୍ତି । ଭୋଟ କିଣିବାପାଇଁ ଆମଭିତରୁ ଅନେକଙ୍କୁ ଟଙ୍କାପଇସା ଯାଚନ୍ତି । ଅନେକ ଜାଗାରେ ଭୋଟ ପାଇବାପାଇଁ ଗୁଣ୍ଡାମାନଙ୍କଦ୍ୱାରା କାରବାର ଚାଲେ । କେଉଁଠି ଭୋଟ ବାକ୍ସ ଚୋରି ହୋଇ ପଳାଏ ତ ଆଉ କେଉଁଠି ଡ଼ର ଭୟ ଦେଖାଇ ଭୋଟ ଆଦାୟ କରାଯାଏ । ଏପରିବି ଦେଖାଯାଏ ଆମେ ଭୋଟ ଦେବାକୁ ଯିବା ପୂର୍ବରୁ ଆମ ନାଁରେ ଭୋଟ ଦିଆହୋଇ ସାରିଥାଏ । ଏ ସବୁର ପ୍ରତିକାର ପାଇଁ ଆମେ କାହାଉପରେ ନିର୍ଭର କରିପାରିବାନାହିଁ । କେବଳ ନିଜେ ସଚେତନ ହୋଇ ଆମକୁ ଆମ ଦାୟିତ୍ୱ ସଂପାଦନ କରିବାକୁ ହେବ । ଏସବୁର ପ୍ରତିକାର ପାଇଁ, ପୋଲିସକୁ ଆପତ୍ତି କଲେ, ପୋଲିସ କିଛି କରିପାରନ୍ତି ନାହିଁ । କାରଣ ପୋଲିସ ହେଉଛି ସରକାରୀ ଚାକିରିଆ । ଚାକିରୀଆର ସମସ୍ତଙ୍କୁ ଡ଼ର । ଗୁଣ୍ଡାଙ୍କୁ ଯେତିକି ଡ଼ର, ଆଜିର ନେତା ଯିଏ ଭୋଟପାଇ କାଲି ସରକାର ଗଢ଼ିବେ, ତାଙ୍କୁ ବି ସେତିକି

ଡ଼ର ।

ଯେଉଁମାନେ ସରକାର ଗଢ଼ିବାପାଇଁ ନେତା ଭାବରେ ଆମ ଆଗରେ ଛିଡ଼ା ହେଉଛନ୍ତି ସେମାନେ କେଉଁ ଶ୍ରେଣୀର ? ସେମାନଙ୍କ ଭିତରୁ ଅନେକ ଶୋଷକ ଗୋଷ୍ଠୀର । ଅନେକ, ସର୍ବ ସାଧାରଣଙ୍କୁ ଶୋଷଣ କରୁଥିବା ବ୍ୟକ୍ତିମାନଙ୍କୁ ଭିତରେ ଭିତରେ ସମର୍ଥନ କରନ୍ତି । ଆମକୁ ନ୍ୟାୟ କେଉଁଠୁ ମିଳିବ ? ଗୁଣ୍ଡାମାନେ ନେତାମାନଙ୍କ ବାହୁଛାୟା ତଳେ ସୁରକ୍ଷିତ ହୋଇ ରହୁଛନ୍ତି । ନେତାମାନେ ଗୁଣ୍ଡାମାନଙ୍କ ଦ୍ୱାରା ନିଜ ନିଜ ସ୍ୱାର୍ଥ ସାଧନ କରାଇବାରେ ଅଭ୍ୟସ୍ତ । ସବୁଆଡ଼େ ଆଖି ବୁଲାଇଆଣିଲେ, ଖାଲି ଦେଖାଯାଉଛି, ଦୁର୍ନିତି ଆଉ ଦୁର୍ନୀତି । କଳାବଜାରୀ, ସାଉକାର ନୀତି, ଚୋର ଡ଼କାୟତି , ଅତ୍ୟାଚାର ସବୁଆଡ଼େ ଛାଇ ହୋଇଯାଇଛି । ରାଜନୈତିକ ନେତାମାନଙ୍କ ପ୍ରତିଶୃତି ବହୁତ । ମନେହୁଏ ସତେଯେପରି ନିର୍ବାଚନ ପରେ ସବୁ ଦୁଃଖ, ସବୁ ସାମସ୍ୟା ଚାଲିଯିବ । ମାତ୍ର ଭୋଟ ସରିଗଲେ, ସବୁ ସରିଯାଏ । ଯେଉଁ କଥାକୁ ସେଇକଥା । ଭୋଟପାଇ ନେତା ମସଗୁଲ ହୋଇ ପଡ଼ନ୍ତି । ଗଣତନ୍ତ୍ରସରକାର , ଲୋକମାନଙ୍କର ଓ ଲୋକମାନଙ୍କ ପାଇଁ ଏକଥା ପୋଥିବାଇଗଣ ହୋଇ ରହିଯାଏ । ସରକାର ବହୁତ ଶକ୍ତିଶାଳୀ ହୋଇପଡ଼ନ୍ତି । ତାଙ୍କ ହାତରେ ପୋଲିସ ମିଲିଟାରୀ ବଳ, ବିଚାର ବିଭାଗ ସବୁକିଛି ରହିଯାଏ । ନିଜ ସ୍ୱାର୍ଥରେ ସରକାର ଦେଶର ସମ୍ବଳ ଖର୍ଚ୍ଚ କରନ୍ତି । ସରକାରୀ କର୍ମଚାରୀମାନଙ୍କୁ ଏଥିପାଇଁ ନିଯୁକ୍ତ କରାଯାଏ ।

ପ୍ରତିବର୍ଷ ଆମଦେଶକୁ ବୋଫର୍ସ ତଥା ପ୍ରତିଭୂତ କାରବାର ଭଳି ବଡ଼ଧରଣର ଦୁର୍ନୀତିମାନ ପଶିଆସୁଅଛି । ଦୋଷୀମାନେ ଦଣ୍ଡପାଉନାହାଁନ୍ତି । ହାତୀମାନେ ଗଳି ଯାଉଛନ୍ତି । ମାତ୍ର ପିମ୍ପୁଡ଼ି ବେଳକୁ ସମସ୍ତେ ମାଡ଼ି ବସୁଛନ୍ତି । ସାରା ସମାଜ ବର୍ତ୍ତମାନ ବିପଦ ସଂକୁଳ । କେତେବେଳେ କଅଣ ଘଟିବ, ତାହା କହି ହେବନି । ମୂଲ୍ୟବୋଧ ବୋଲି କିଛି ରହୁନାହିଁ । ସବୁଆଡ଼େ ବ୍ୟାପିଯାଇଛି, ଦୁର୍ନିତି ଆଉ ଦୁର୍ନିତି । ସାଧୁତା, ସଚ୍ଚୋଟତା କଥା କହିଲେ, ସମସ୍ତେ ଚାହି ଟାପରା କରୁଛନ୍ତି । ଜନ ସାଧାରଣଙ୍କ ସମ୍ପତ୍ତି, ଯିଏ ଯେପରି ପାରିଲା, ନେଇଯିବାରେ ବ୍ୟସ୍ତ ଆଉ ଖାଇବାରେ ବ୍ୟସ୍ତ । ଅନେକ ଜାଗାରେ ,"ସରକାରକା ମାଲ୍ ଦରିଆ ମେ ଡ଼ାଲ " କହି ସରକାରୀ ଧନ ବୁହା ଚାଲିଛି ।

ଯେଉଁମାନେ ସରକାରରେ ନାହାଁନ୍ତି, ସେମାନେ ସରକାରରେ ଥିବା ନେତାମାନଙ୍କୁ ଭାରି ଈର୍ଷା କରନ୍ତି । ସେମାନେ କଳେବଳେ କୌଶଳେ ସରକାର ଗଢ଼ିବାକୁ ଚାହାଁନ୍ତି । ବେଳେବେଳେ ସେମାନେ ଲୋକମାନଙ୍କୁ ଗୁଣ୍ଡାଗିରି, ଚୋରି

ଡ଼କାୟତି, ଦଙ୍ଗାହଙ୍ଗାମା କରି ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟିକରିବାକୁ ଉତ୍ସୁକାନ୍ତି ।

ଆମ ଭିତରୁ ଅନେକେ ଏସବୁ ସହି ପାରନ୍ତିନି । ବ୍ୟକ୍ତିଗତ ଭାବରେ ସେମାନେ ଆତଙ୍କବାଦୀ ସାଜନ୍ତି । ପ୍ରକୃତରେ ଯେଉଁମାନେ ସଚ୍ଚୋଟ ନିଷ୍ଠାପର ଏବଂ ଯେଉଁମାନଙ୍କର ଦରିଦ୍ର ତଥା ତଳେପଡ଼ିଥିବା ଲୋକଙ୍କ ପ୍ରତି ଦରଦଥାଏ, ସେହିମାନେ ହିଁ ନିଜ ଜୀବନ ଦେବାକୁ ପ୍ରସ୍ତୁତ ହୋଇ ଆତଙ୍କବାଦୀ ହୁଅନ୍ତି । କିନ୍ତୁ ଉଦ୍ଦେଶ୍ୟ ଯେତେ ମହତ୍ ଥିଲେବି ମାର୍ଗ ଯଦି ଖରାପହୁଏ, ଶେଷରେ ବିଫଳତା ମିଳେ । ସ୍ୱାର୍ଥପର ଲୋକେ, ଗୁଣ୍ଡା ତଥା ଅପରାଧୀମାନେ ଏ ସୁଯୋଗ ହାତକୁ ନେଇ ନିଜ ଉଦ୍ଦେଶ୍ୟ ଚରିତାର୍ଥ କରନ୍ତି ।

ଏବେ ସବୁକିଛି ନିରାଶାଜନକ ଲାଗୁଛି । ସନ୍ଥ ପାଳିବାପାଇଁ, ଦୁଷ୍ଟ ନିବାରଣ କରିବାପାଇଁ କୌଣସି ଭଗବାନ ଆଉ ଅବତାର ନେଇ ଆସିବେ ନାହିଁ । ଏଥିପାଇଁ ଅପେକ୍ଷା କରିବା ବୃଥା । କେବଳ ଯଦି ଆମ ନିଜ ଉପରେ ଆମର ଭରସାଥାଏ, ତେବେ ଆମେ ନିଜକୁ ନିଜେ ରକ୍ଷା କରିପାରିବା । କିନ୍ତୁ ନିଜଉପରେ ଆମର ବିଶ୍ୱାସ ନାହିଁ । ଏକଥା ମୋଟେ ଭଲନୁହେଁ । ନିଜ ଉପରେ ଆମର ବିଶ୍ୱାସ ନଥିଲେ କିଏ ଆସି ଆମକୁ ରକ୍ଷା କରିବ ? ଆମ ସମାଜରେ ସବୁକିଛି କେମିତି ଚ୍ଳଳିଛି, ଆସ ସେସବୁକୁ ଟିକେ ଭଲ ଭାବରେ ଲକ୍ଷ୍ୟ କରିବା । ଆମେ ହଳ କରୁଛେ, ମଞ୍ଜି ବୁଣୁଛେ, ଜମିରେ ପାଣି ମଡ଼ାଉଛେ , ଫସଲ ଅମଳ କରୁଛେ ଏବଂ ହାଟକୁ ନେଇ ବିକ୍ରି କରୁଛେ ।

ଆମେ ପଥର ଭାଙ୍ଗୁଛେ, ବାଲି, ସିମେଣ୍ଟ, ଗେଟି ମିଶାଇ ଘର ତିଆରି କରୁଛେ ।

ଗେଟିପଥର ଭାଙ୍ଗି ଆମେ ରାସ୍ତା ତିଆରି କରୁଛେ । ଆମେ କେନାଲ ଖୋଳୁଛେ, ବ୍ରିଜ୍ ତିଆରି କରୁଛେ ।

ଆମେ କମାରକାମ କରୁଛେ, ବଢ଼େଇକାମ କରୁଛେ , ଗଛହାଣି ଜାଳକାଠ ବନାଉଛେ । ଅନ୍ୟମାନଙ୍କର ନାଳ ନର୍ଦ୍ଦମା ସଫା କରୁଛେ ।

କହିବାକୁଗଲେ, ଆମେହିଁ ସବୁକାମ କରୁଛେ, ପୁଣି ସବୁକାମ ଅନ୍ୟମାନଙ୍କ ପାଇଁ କରୁଛେ ।

ଟିକିଏ ଭାବିବା ଦେଖି; ଯଦି କିମିଆ କରି ଆମକୁ କିଏ ପଥର କରିଦିଅନ୍ତା, ତେବେ କ'ଣ ହୁଅନ୍ତା ! ଆମେ ଯେଉଁ କାମଦାମ କରୁଥିଲେ ସେସବୁ କିଏ କରନ୍ତା ? ଯେଉଁମାନଙ୍କ ପାଇଁ ଆମେ ଏସବୁ କରୁଥିଲେ, ସେମାନଙ୍କର କଅଣ ହୁଅନ୍ତା ?

ପ୍ରକୃତରେ ଦେଖିଲେ, ଆମ ବିନା ସେମାନେ ତିଳେମାତ୍ର ଚଳି ପାରନ୍ତେ

ନାହିଁ ।

କିନ୍ତୁ ସେମାନେ ଯଦି ହଠାତ୍ ପଥର ପାଲଟି ଯାଆନ୍ତେ, ତେବେ ଆମର କ'ଣ ହୁଅନ୍ତା ? ବୋଧହୁଏ ଆମେ ଆହୁରି ସୁଖରେ ରହନ୍ତେ । ଆମେ ତ ସବୁ କାମ କରିଜାଣିଛେ , ଆମର ଅବା କ'ଣ ଅସୁବିଧା ହୁଅନ୍ତା ।

ଏଇଟା ଏକ ନିରାଟ ସତକଥା ଯେ, ଆମ ଭିତରୁ ଅଧିକାଂଶ ପଢ଼ିଲେଖି ଜାଣିନାହାନ୍ତି । ବିଜ୍ଞାନ, ଇଞ୍ଜିନିୟରିଂ ପାଠ, ସଂସ୍କୃତ ଅବା ଇଂରାଜୀ ଉପରେ ଆମର ଧାର ଧାରଣା ନାହିଁ । କିନ୍ତୁ ଏସବୁ ଆମକୁ ବଳେଇଯିବ ନାହିଁ । ଆମେ ଧୀରେ ଧୀରେ ପାହାଚ ପରେ ପାହାଚ ଉଠି ସବୁ ଶିଖିଯାଇପାରିବା ।

ଯଦି ଜଣକ ପାଖରେ ସବୁ ଜମିନରଖି ସମସ୍ତଙ୍କ ଭିତରେ ବାଣ୍ଟିଦିଆଯାଆନ୍ତା, ତେବେ କେମିତି ହୁଅନ୍ତା ? ଆମେ ଆମର ଫସଲ ଫଳେଇ ଆମ ଖାଇବା ଗଣ୍ଡାକ ପାଇଯାଆନ୍ତେ , ଆମପାଇଁ ଲୁଗା ବୁଣି ପାରନ୍ତେ, ରହିବାପାଇଁ ଘର ତିଆରି କରିପାରନ୍ତେ । ଆଜି ସେମାନେ ଏସବୁ କରିବାପାଇଁ ଆମକୁ ବାଟ ଛାଡୁନାହାନ୍ତି । ସବୁକିଛି ତାଙ୍କର ବୋଲି କହୁଛନ୍ତି । ଏସବୁ ପୂରା ମିଛକଥା । ମାଟି କାହାର ? ମା'ପେଟରୁ କେହି ମାଟିକୁ ଧରି ଆସି ନଥିଲେ କି ମଲାବେଳକୁ କେହି ମାଟି ନେଇଯାଇପାରିବେନି । ମାଟି, ପାଣି, ପବନ, ଗଛଲତା; ଏସବୁ ଧରଣୀମାତାର ସମ୍ପତ୍ତି । ଏଥିରେ ସମସ୍ତଙ୍କର ସମାନ ଅଧିକାର ଅଛି ।

କହିଲାବେଳେ ଏସବୁ ଭାରି ଭଲଶୁଭୁଛି, ମାତ୍ର ବାସ୍ତବ କ୍ଷେତ୍ରରେ ଏସବୁ ହେବ କେମିତି ? କେତେ କେତେ ଚେଷ୍ଟା ଆଗରୁ କରାଯାଇଛି । ମାଡ଼, ଗାଳି, ଭର୍ତ୍ସନା ଖାଇଖାଇ ସବୁ ଆଶା ଆଉ ସ୍ୱପ୍ନ ଫସର ଫାଟିଯାଇଛି । ଏସବୁ ସତ, କିନ୍ତୁ ଆମକୁ ନିରାଶ ନହୋଇ ବାରମ୍ବାର ଚେଷ୍ଟା କରିବାକୁ ପଡ଼ିବ । ଯୁଦ୍ଧ କଲାବେଳେ ଅସ୍ତ୍ର ଶସ୍ତ୍ର ବାରମ୍ବାର ସଜାଡ଼ିବାକୁ ହେବ ଏବଂ ଉନ୍ନତ ଧରଣର ଅସ୍ତ୍ର ଶସ୍ତ୍ର ବ୍ୟବହାର କରିବାକୁ ପଡ଼ିବ । ଶତ୍ରୁ ପକ୍ଷର ଦୁର୍ଗରେ ଥିବା ଦୁର୍ବଳତା ଗୁଡ଼ିକୁ ଲକ୍ଷ୍ୟ କରିବାକୁ ପଡ଼ିବ ।

ଆମ ଭିତରୁ ଅନେକ ଏବେ ପଢ଼ିଲେଖି ଶିଖିଲେଣି । ଏହା ଗୋଟିଏ ଛୋଟିଆ କଥା ନୁହେଁ । ଏହା ଆମମାନଙ୍କ ଭିତରେ ଗୋଟିଏ ରକମର ବିଶ୍ୱାସ ସୃଷ୍ଟି କରୁଛି । ଏଭଳି ବିଶ୍ୱାସ ଆଗରୁ ଆମପାଖରେ ନଥିଲା । କିନ୍ତୁ ଅଧାପନ୍ତରିଆ କରି ପଢ଼ିଲେଖି ଶିଖିଲେ କିଛି ବି ଲାଭ ହେବନି, ଆମେ ଯେପରି ହଳ କରୁଛେ, ଫସଲ କାଟୁଛେ,ପହୁଁରୁଛେ, ଲୁଗା ବୁଣୁଛେ, ସେହିପରି ପାଠପଢ଼ା ଆମର ଅତି ସ୍ୱାଭାବିକ ହୋଇଯିବା ଆବଶ୍ୟକ । ଖାଲି ନାଁ ଦସ୍ତଖତ କରିଦେଲେ, କିଛି ବି ଲାଭ ହେବନି । ଆମକୁ ବହୁତ କିଛି ଜାଣିବାକୁ ହେବ । ବହୁତ କିଛି ଶିଖିବାକୁ ହେବ ।

ପଢ଼ିଲେଖି ଜାଣିବା ଅର୍ଥ ବିଶ୍ବକୁ ଜାଣିବା ସଙ୍ଗେ ସମାନ । ଯେଉଁମାନେ ଆମକୁ ଶୋଷଣ କରୁଛନ୍ତି, ସେମାନଙ୍କର ବୁଦ୍ଧି ଅଛି, ସେମାନେ ପାଠ ଶାଠ ପଢ଼ି ଚାଲାକ ହୋଇଛନ୍ତି । ଆମକୁ ପାଠ ପଢ଼ି ଜ୍ଞାନକୁ ଅକ୍ତିଆର କରିବାକୁ ପଡ଼ିବ । ଅକ୍ଷର ଜାଣିବା ଆଉ ପଢ଼ିଲେଖିପାରିବା ଏଦିଗରେ ପ୍ରଥମ ପଦକ୍ଷେପ । କିନ୍ତୁ ଏତିକିରେ ଅଟକି ଗଲେ ଚଳିବ ନାହିଁ । ଆମକୁ ବହୁତ ଲମ୍ବା ବାଟ ଚାଲିବାକୁ ହେବ । ଅନେକ ପାହାଚ ଚଢ଼ିବାକୁ ପଡ଼ିବ । ଏପରିକି ପାଠ ପଢ଼ା କେନ୍ଦ୍ରରୁ ଆମେ ଯେଉଁ ଛୋଟିଆ ଛୋଟିଆ କଥା ଶିଖୁଛୁ, ସେସବୁ ନିଶ୍ଚିତ ଭାବରେ ଆମ ଭିତରେ ଅନେକ ସ୍ୱାଧୀନ ମନୋଭାବ ଆଣିଦେଇଛି । ଏଇ ନିକଟରେ ଆନ୍ଧ୍ରପ୍ରଦେଶର ନେଲୋର ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ ଚାଲିଥିଲା । ମା ଭଉଣୀମାନେ ପାଠ ପଢ଼ି ନିଜ ବିଷୟରେ ସଚେତନ ହେଲେ । ମଦନିଶାର ଅପକାରିତା ବିଷୟରେ ହୃଦୟଙ୍ଗମ କଲେ । ମରଦମାନଙ୍କୁ ମଦ ନିଶାରୁ ନିବୃତ୍ତ କଲେ । ମଦ ବିରୋଧରେ ଆନ୍ଦୋଳନ କଲେ । ଆନ୍ଦୋଳନ ଏମିତି ଆକାର ଧାରଣ କଲାଯେ ଶେଷକୁ ସରକାର କ୍ଷତି ସହିଲେ ବି ବାଧ୍ୟହୋଇ ମଦ ବିକ୍ରି ବନ୍ଦ କଲେ । ସେମିତି ତାମିଲନାଡୁର ପୁଡୁକୋଟାଇ ଜିଲ୍ଲା କଥା । ସେଠାରେ ପ୍ରାୟ ଲକ୍ଷେ ମହିଳା ସାଇକେଲ ଚଲାଇ ଶିଖିଲେ । ଦୂରରୁ ପାଣି ବୋହିବାକୁ ଆଉ କଷ୍ଟ କରିବାକୁ ପଡୁନି । ସେଠାରେ ମହିଳାମାନେ ସଂଗଠିତ ହୋଇ କାମ କରୁଛନ୍ତି । ବର୍ତ୍ତମାନ ସେମାନେ ପଥରକଟା ବ୍ୟବସାୟରେ ନିଜେ ମାଲିକ ହେଲେଣି । ବ୍ୟାଙ୍କ କାରବାର ଓ ବ୍ୟବସାୟ ଆଦିରେ ପାରଙ୍ଗମ ହେଲେଣି । ଏଇମାତ୍ର ଦି ବର୍ଷଆଗରୁ ସେମାନେ ଆମଭଳି ନିରୀହ ଅପାପେଇ ଆଉ ସଂଦେହୀ ଥିଲେ । ସବୁକାମକୁ ଡ଼ରିମରି କରୁଥିଲେ ।

ବର୍ତ୍ତମାନ ଅବିଶ୍ୱାସ ବା ସଂଦେହ କରିବାର କୌଣସି କାରଣ ନାହିଁ । ଆମଦ୍ୱାରା ସବୁକିଛି ହୋଇପାରିବ । କିନ୍ତୁ ଏଥିପାଇଁ ଆମକୁ ସଂଗ୍ରାମ କରିବାକୁ ପଡ଼ିବ । ପାଦେ ପାଦେ କରି ଆଗେଇବାକୁ ହେବ । ଏକୁଟିଆ ବା ଛୋଟିଆ ଦଳରେ ଗଲେ ଆମେ ବିଫଳ ହେବା । ସମସ୍ତଙ୍କୁ ମିଳିମିଶି ଯିବାକୁ ହେବ ।

ଜାତିଧର୍ମ ନିର୍ବିଶେଷରେ ଆମେ ସମସ୍ତେ ମଣିଷ । ଆମ ସମସ୍ତଙ୍କର ଗୋଟିଏ ଗୋଟିଏ ପେଟ ଅଛି ଆଉ ଦି ଦିଟା ହାତ ଅଛି । ଆମେ ସମସ୍ତେ ଭୋକ ଉପାସରେ ରହୁଛେ । ଦାରିଦ୍ର୍ୟର ଯନ୍ତ୍ରଣା ଭୋଗ କରୁଛେ । ସମସ୍ତେ ଆମେ ସମାନ ମଇଳାପାଣି ପିଉଛେ । ଖରାପ ପବନ ଆମ ପ୍ରଶ୍ୱାସରେ ଗ୍ରହଣ କରୁଛେ । ଆମ ଅଜାଣତରେ ଆମ ଭିତରେ ନାନା ଉପାୟରେ ଚକ୍ରାନ୍ତ କରାଯାଉଛି । ଫଳରେ ଆମେ ନିଜ ନିଜ ଭିତରେ ଯୁଦ୍ଧ କରୁଛେ । ଶତ୍ରୁକୁ ଭୁଲିଯାଉଛେ । ଆମ ଭିତରେ ଉଚ୍ଚ ଜାତି ନୀଚ୍ ଜାତିର

ନାହିଁ ।

କିନ୍ତୁ ସେମାନେ ଯଦି ହଠାତ୍ ପଥର ପାଲଟି ଯାଆନ୍ତେ, ତେବେ ଆମର କ'ଣ ହୁଅନ୍ତା ? ବୋଧହୁଏ ଆମେ ଆହୁରି ସୁଖରେ ରହନ୍ତେ । ଆମେ ତ ସବୁ କାମ କରିଜାଣିଛେ , ଆମର ଅବା କ'ଣ ଅସୁବିଧା ହୁଅନ୍ତା ।

ଏଇଟା ଏକ ନିରାଟ ସତକଥା ଯେ, ଆମ ଭିତରୁ ଅଧିକାଂଶ ପଢ଼ିଲେଖି ଜାଣିନାହାନ୍ତି । ବିଜ୍ଞାନ, ଇଞ୍ଜିନିୟରିଂ ପାଠ, ସଂସ୍କୃତ ଅବା ଇଂରାଜୀ ଉପରେ ଆମର ଧାର ଧାରଣା ନାହିଁ । କିନ୍ତୁ ଏସବୁ ଆମକୁ ବଳେଇଯିବ ନାହିଁ । ଆମେ ଧୀରେ ଧୀରେ ପାହାଚ ପରେ ପାହାଚ ଉଠି ସବୁ ଶିଖିଯାଇପାରିବା ।

ଯଦି ଜଣକ ପାଖରେ ସବୁ ଜମିନରଖି ସମସ୍ତଙ୍କ ଭିତରେ ବାଣ୍ଟିଦିଆଯାଆନ୍ତା, ତେବେ କେମିତି ହୁଅନ୍ତା ? ଆମେ ଆମର ଫସଲ ଫଳେଇ ଆମ ଖାଇବା ଗଣ୍ଡାକ ପାଇଯାଆନ୍ତେ ଆମପାଇଁ ଲୁଗା ବୁଣି ପାରନ୍ତେ, ରହିବାପାଇଁ ଘର ତିଆରି କରିପାରନ୍ତେ । ଆଜି ସେମାନେ ଏସବୁ କରିବାପାଇଁ ଆମକୁ ବାଟ ଛାଡ଼ୁନାହାନ୍ତି । ସବୁକିଛି ତାଙ୍କର ବୋଲି କହୁଛନ୍ତି । ଏସବୁ ପୂରା ମିଛକଥା । ମାଟି କାହାର ? ମା'ପେଟରୁ କେହି ମାଟିକୁ ଧରି ଆସି ନଥିଲେ କି ମଲାବେଳକୁ କେହି ମାଟି ନେଇଯାଇପାରିବେନି । ମାଟି, ପାଣି, ପବନ, ଗଛଲତା; ଏସବୁ ଧରଣୀମାତାର ସମ୍ପତ୍ତି । ଏଥିରେ ସମସ୍ତଙ୍କର ସମାନ ଅଧିକାର ଅଛି ।

କହିଲାବେଳେ ଏସବୁ ଭାରି ଭଲଶୁଭୁଛି, ମାତ୍ର ବାସ୍ତବ କ୍ଷେତ୍ରରେ ଏସବୁ ହେବ କେମିତି ? କେତେ କେତେ ଚେଷ୍ଟା ଆଗରୁ କରାଯାଇଛି । ମାଡ଼, ଗାଳି, ଭର୍ତ୍ସନା ଖାଇଖାଇ ସବୁ ଆଶା ଆଉ ସ୍ୱପ୍ନ ଫସର ଫାଟିଯାଇଛି । ଏସବୁ ସତ, କିନ୍ତୁ ଆମକୁ ନିରାଶ ନହୋଇ ବାରମ୍ବାର ଚେଷ୍ଟା କରିବାକୁ ପଡ଼ିବ । ଯୁଦ୍ଧ କଲାବେଳେ ଅସ୍ତ୍ର ଶସ୍ତ୍ର ବାରମ୍ବାର ସଜାଡ଼ିବାକୁ ହେବ ଏବଂ ଉନ୍ନତ ଧରଣର ଅସ୍ତ୍ର ଶସ୍ତ୍ର ବ୍ୟବହାର କରିବାକୁ ପଡ଼ିବ । ଶତ୍ରୁ ପକ୍ଷର ଦୁର୍ଗରେ ଥିବା ଦୁର୍ବଳତା ଗୁଡ଼ିକୁ ଲକ୍ଷ୍ୟ କରିବାକୁ ପଡ଼ିବ ।

ଆମ ଭିତରୁ ଅନେକ ଏବେ ପଢ଼ିଲେଖି ଶିଖିଲେଣି । ଏହା ଗୋଟିଏ ଛୋଟିଆ କଥା ନୁହେଁ । ଏହା ଆମମାନଙ୍କ ଭିତରେ ଗୋଟିଏ ରକମର ବିଶ୍ୱାସ ସୃଷ୍ଟି କରୁଛି । ଏଭଳି ବିଶ୍ୱାସ ଆଗରୁ ଆମପାଖରେ ନଥିଲା । କିନ୍ତୁ ଅଧାପନ୍ତରିଆ କରି ପଢ଼ିଲେଖି ଶିଖିଲେ କିଛି ବି ଲାଭ ହେବନି, ଆମେ ଯେପରି ହଳ କରୁଛେ, ଫସଲ କାଟୁଛେ,ପହଁରୁଛେ, ଲୁଗା ବୁଣୁଛେ, ସେହିପରି ପାଠପଢ଼ା ଆମର ଅତି ସ୍ୱାଭାବିକ ହୋଇଯିବା ଆବଶ୍ୟକ । ଖାଲି ନାଁ ଦସ୍ତଖତ କରିଦେଲେ, କିଛି ବି ଲାଭ ହେବନି । ଆମକୁ ବହୁତ କିଛି ଜାଣିବାକୁ ହେବ । ବହୁତ କିଛି ଶିଖିବାକୁ ହେବ ।

ପଢ଼ିଲେଖି ଜାଣିବା ଅର୍ଥ ବିଶ୍ୱକୁ ଜାଣିବା ସଙ୍ଗେ ସମାନ । ଯେଉଁମାନେ ଆମକୁ ଶୋଷଣ କରୁଛନ୍ତି, ସେମାନଙ୍କର ବୁଦ୍ଧି ଅଛି, ସେମାନେ ପାଠ ଶାଠ ପଢ଼ି ଚ୍ୱାଲାକ ହୋଇଛନ୍ତି । ଆମକୁ ପାଠ ପଢ଼ି ଜ୍ଞାନକୁ ଅକ୍ତିଆର କରିବାକୁ ପଡ଼ିବ । ଅକ୍ଷର ଜାଣିବା ଆଉ ପଢ଼ିଲେଖିପାରିବା ଏଦିଗରେ ପ୍ରଥମ ପଦକ୍ଷେପ । କିନ୍ତୁ ଏତିକିରେ ଅଟକି ଗଲେ ଚଳିବ ନାହିଁ । ଆମକୁ ବହୁତ ଲମ୍ବା ବାଟ ଚ୍ୱାଲିବାକୁ ହେବ । ଅନେକ ପାହାଡ଼ ଚଢ଼ିବାକୁ ପଡ଼ିବ । ଏପରିକି ପାଠ ପଢ଼ା କେନ୍ଦ୍ରରୁ ଆମେ ଯେଉଁ ଛୋଟିଆ ଛୋଟିଆ କଥା ଶିଖୁଛୁ, ସେସବୁ ନିଶ୍ଚିତ ଭାବରେ ଆମ ଭିତରେ ଅନେକ ସ୍ୱାଧୀନ ମନୋଭାବ ଆଣିଦେଇଛି । ଏଇ ନିକଟରେ ଆନ୍ଧ୍ରପ୍ରଦେଶର ନେଲୋର ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ ଚ୍ୱାଲିଥିଲା । ମା ଭଉଣୀମାନେ ପାଠ ପଢ଼ି ନିଜ ବିଷୟରେ ସଚେତନ ହେଲେ । ମଦନିଶାର ଅପକାରିତା ବିଷୟରେ ହୃଦୟଙ୍ଗମ କଲେ । ମରଦମାନଙ୍କୁ ମଦ ନିଶାରୁ ନିବୃତ୍ତ କଲେ । ମଦ ବିରୋଧରେ ଆନ୍ଦୋଳନ କଲେ । ଆନ୍ଦୋଳନ ଏମିତି ଆକାର ଧାରଣ କଲାଯେ ଶେଷକୁ ସରକାର କ୍ଷତି ସହିଲେ ବି ବାଧ୍ୟହୋଇ ମଦ ବିକ୍ରି ବନ୍ଦ କଲେ । ସେମିତି ତାମିଲନାଡୁର ପୁଡୁକୋଟାଇ ଜିଲ୍ଲା କଥା । ସେଠାରେ ପ୍ରାୟ ଲକ୍ଷେ ମହିଳା ସାଇକେଲ ଚଲାଇ ଶିଖିଲେ । ଦୂରରୁ ପାଣି ବୋହିବାକୁ ଆଉ କଷ୍ଟ କରିବାକୁ ପଡୁନି । ସେଠାରେ ମହିଳାମାନେ ସଂଗଠିତ ହୋଇ କାମ କରୁଛନ୍ତି । ବର୍ତ୍ତମାନ ସେମାନେ ପଥରକଟା ବ୍ୟବସାୟରେ ନିଜେ ମାଲିକ ହେଲେଣି । ବ୍ୟାଙ୍କ କାରବାର ଓ ବ୍ୟବସାୟ ଆଦିରେ ପାରଙ୍ଗମ ହେଲେଣି । ଏଇମାତ୍ର ଦି ବର୍ଷଆଗରୁ ସେମାନେ ଆମଭଳି ନିରୀହ ଅପାପେଇ ଆଉ ସଂଦେହୀ ଥିଲେ । ସବୁକାମକୁ ଡ଼ରିମରି କରୁଥିଲେ ।

ବର୍ତ୍ତମାନ ଅବିଶ୍ୱାସ ବା ସଂଦେହ କରିବାର କୌଣସି କାରଣ ନାହିଁ । ଆମଦ୍ୱାରା ସବୁକିଛି ହୋଇପାରିବ । କିନ୍ତୁ ଏଥିପାଇଁ ଆମକୁ ସଂଗ୍ରାମ କରିବାକୁ ପଡ଼ିବ । ପାଦେ ପାଦେ କରି ଆଗେଇବାକୁ ହେବ । ଏକୁଟିଆ ବା ଛୋଟିଆ ଦଳରେ ଗଲେ ଆମେ ବିଫଳ ହେବା । ସମସ୍ତଙ୍କୁ ମିଳିମିଶି ଯିବାକୁ ହେବ ।

ଜାତିଧର୍ମ ନିର୍ବିଶେଷରେ ଆମେ ସମସ୍ତେ ମଣିଷ । ଆମ ସମସ୍ତଙ୍କର ଗୋଟିଏ ଗୋଟିଏ ପେଟ ଅଛି ଆଉ ଦି ଦିଟା ହାତ ଅଛି । ଆମେ ସମସ୍ତେ ଭୋକ ଉପାସରେ ରହୁଛେ । ଦାରିଦ୍ର୍ୟର ଯନ୍ତ୍ରଣା ଭୋଗ କରୁଛେ । ସମସ୍ତେ ଆମେ ସମାନ ମଇଳାପାଣି ପିଉଛେ । ଖରାପ ପବନ ଆମ ପ୍ରଶ୍ୱାସରେ ଗ୍ରହଣ କରୁଛେ । ଆମ ଅଜାଣତରେ ଆମ ଭିତରେ ନାନା ଉପାୟରେ ଚକ୍ରାନ୍ତ କରାଯାଉଛି । ଫଳରେ ଆମେ ନିଜ ନିଜ ଭିତରେ ଯୁଦ୍ଧ କରୁଛେ । ଶତ୍ରୁକୁ ଭୁଲିଯାଉଛେ । ଆମ ଭିତରେ ଉଚ୍ଚ ଜାତି ନୀଚ୍ ଜାତିର

ଭେଦଭାବ ସୃଷ୍ଟି କରାଯାଉଛି । ମନ୍ଦିର ମସଜିଦ୍ ଭିତରେ ଠାକୁର ଅଲଗା ଅଲଗା ବୋଲି ବୁଝାଇ ଦିଆଯାଉଛି । ଆସ ଆମେ ସମସ୍ତେ ପ୍ରକୃତ ସତ୍ୟଟିକୁ ବୁଝିବା ଓ ସମସ୍ତଙ୍କୁ ଏହା ବୁଝାଇଦେବା । ସବୁ ସୁଯୋଗ ଗୁଡ଼ିକର ସଦୁପଯୋଗ କରିବା । ସୁବର୍ଣ୍ଣସୁଯୋଗଟିଏ ଆସିବ ବୋଲି ଅପେକ୍ଷା କରି ବସିଯିବାନି ।

ନିକଟରେ ଆମ ରାଜ୍ୟରେ ପଞ୍ଚାୟତ ନିର୍ବାଚନ ସରିଗଲା । ଦେଶର ଅନ୍ୟରାଜ୍ୟମାନଙ୍କରେ ପଞ୍ଚାୟତ ନିର୍ବାଚନ ନିକଟରେ ହେବ, ଆମେ ସରପଞ୍ଚ ଓ ସମିତି ମେମ୍ବର ଆଦିଙ୍କୁ ଭୋଟଦେଇ ବାଛିଛେ । ଆଗରୁ ଆମର ପଞ୍ଚାୟତ ଥିଲା । କିନ୍ତୁ ଏଥରର ପଞ୍ଚାୟତ ଆଗଠାରୁ ଅଲଗା । ପ୍ରଥମ କଥା ହେଲା-ବହୁଦିନପରେ ଆମ ପଞ୍ଚାୟତ ନିର୍ବାଚନ ହେଲା । ଆମ ନିର୍ବାଚନ ଆମର ଅଧିକାର ବୋଲି ବିଚାର କରାଯାଉନଥିଲା । ଏବେ କିନ୍ତୁ ସେପରିନାହିଁ । ଦ୍ୱୀତିୟରେ ଆଗେ, ସରପଞ୍ଚ ହୁଅନ୍ତୁ ବା ନ ହୁଅନ୍ତୁ ଜମିଦାରମାନେ, ପ୍ରଭାବଶାଳୀ ବ୍ୟକ୍ତିମାନେ ହେଉଥିଲେ, ପଞ୍ଚାୟତ ଶାସନର ହର୍ତ୍ତା କର୍ତ୍ତା ବିଧାତା । ସେମାନଙ୍କ ଆଗରେ ପଞ୍ଚାୟତମାନେ ଅତି ଦୁର୍ବଳ ହୋଇ ରହୁଥିଲେ । ବର୍ତ୍ତମାନ କିନ୍ତୁ କଥାଟା ଅଲଗା । ଏବେ ପଞ୍ଚାୟତକୁ ବହୁତ ଶକ୍ତି ଆଉ ବହୁତ ସମ୍ବଳ ଦିଆଯାଉଛି । ବର୍ତ୍ତମାନ ପଞ୍ଚାୟତ କାହାଆଗରେ ମୁଣ୍ଡ ନୁଆଁଇ ଚାଲିବ ନାହିଁ । ଏକଥା ସତ୍ୟ ଯେ ପ୍ରଭାବଶାଳୀ ବ୍ୟକ୍ତି ଓ ଉଚ୍ଚ ଜାତିର ଲୋକମାନେ ବେଳେ ବେଳେ କୌଶଳ ଭୋଟରେ ଜିତି ପଞ୍ଚାୟତ ଶାସନକୁ ଅକ୍ତିଆର କରିବାକୁ ଚେଷ୍ଟା କରିବେ । ପଞ୍ଚାୟତପାଇଁ ଅନେକ କିଛି କରିଦେବେ ବୋଲି ପ୍ରତିଶ୍ରୁତି ଦେବେ ।

ମନେରଖିବାକୁ ହେବ ଯେ ବର୍ତ୍ତମାନ ଆମପାଇଁ ସୁବର୍ଣ୍ଣ ସୁଯୋଗ ଆସିଛି । ଅନ୍ୟମାନଙ୍କ ପାଲରେ ପଡ଼ି ବାଟବଣା ହେବା ନାହିଁ । ମିଥ୍ୟା ପ୍ରତିଶ୍ରୁତିରେ ଭଳିଯିବା ନି । ସଚ୍ଚୋଟ ଦରଦୀ ବ୍ୟକ୍ତିଙ୍କୁ ଆମେ ଭୋଟ ଦେଇ ଜିତାଇବା । ବର୍ତ୍ତମାନ ଆମେ ଯେଉଁମାନଙ୍କୁ ଆମର ସରପଞ୍ଚ ବା ପଞ୍ଚାୟତ ସମିତି ସଭ୍ୟ ଭାବରେ ବାଛିଛନ୍ତି, ସେମାନଙ୍କୁ ଆମ ସମସ୍ୟା ଜଣାଇବା । ଆମ ଅଧିକାର ବିଷୟରେ କହିବା । ସେମାନଙ୍କ ଭିତରେ ଅନେକ ଆମମାନଙ୍କ କଥା ଠିକ ଭାବରେ ବୁଝିପାରିବେ ଓ ଆମ ସମସ୍ୟା ସମାଧାନ କରିବାକୁ ଆଗେଇ ଆସିବେ । ଆମ ପଞ୍ଚାୟତ ବ୍ୟବସ୍ଥାରେ ଗୋଟିଏ ବଡ଼ କଥା କରାଯାଇଛି । ଶହେରେ ୩୦ ଭାଗ ସ୍ଥାନ ମହିଳାମାନଙ୍କ ପାଇଁ ସଂରକ୍ଷିତ କରାଯାଇଛି । ଆଗରୁ ମହିଳାମାନେ ଶାସନ କାମରେ ଭାଗନେବାକୁ ଆଗେଇ ଆସୁନଥିଲେ ବା ସେମାନଙ୍କୁ ସୁଯୋଗ ଦିଆ ଯାଇନଥିଲା । ବର୍ତ୍ତମାନ କିନ୍ତୁ ଅନେକ ଭଉଣୀ ସରପଞ୍ଚ, ପଞ୍ଚାୟତ ସମିତି ସଭ୍ୟା, ପଞ୍ଚାୟତ ସମିତି ଚେୟାରମ୍ୟାନ ଭାବରେ

ନିର୍ବାଚିତ ହେଉଛନ୍ତି । ଏଇଟା କିଛି କମ୍ କଥାନୁହେଁ । ନିର୍ବାଚିତ ମା ଉଉଣୀମାନେ ଯଦି ଠିକ୍ ଭାବରେ ସବୁକଥା ବୁଝିପାରିବେ, ତେବେ ଅନେକ କଥା ସୁଧୁରିଯିବ । ଆମ ମା ଓ ଉଉଣୀମାନଙ୍କର ଅସୁବିଧା ଓ ସମସ୍ୟା କଥା ସେମାନେ ସରକାରଙ୍କୁ ସିଧାସଳଖ ଜଣାଇ ନୂଆ ନୂଆ ଯୋଜନା ଆଣିଦେବେ । ଏ ସୁଯୋଗର ଉପଯୁକ୍ତ ବିନିଯୋଗ କରିନପାରିଲେ, ଆମେ, ସବୁଠାରେ ହତଭାଗା ହୋଇ ରହିବା ।

ଯୁଗ ଅନେକ ଆଗେଇଲାଣି । କିନ୍ତୁ ଆମେ ପଛରେ ପଡ଼ିରହିଛୁ । କିଛି ଜାଣିବାକୁ ଆମର ଇଚ୍ଛାନାହିଁ । ଭୋଟ ଦେଲାବେଳେ ଆମେ ବୁଝିପାରୁନୁ ଭୋଟ କାହିଁ କି ଦେବା । ଭୋଟ ଦିନ ପାଖେଇ ଆସିଲା ବେଳକୁ, ଅସାଧୁ ନେତା ଟଙ୍କା ପଇସା, ଲୁଗାପଟା ଗ୍ଉଳ ବାଣ୍ଟିଦିଅନ୍ତି । ଆମେ ବୁଝି ନବୁଝି ଏଇନେତାମାନଙ୍କୁ ତାଙ୍କ ଚିହ୍ନରେ ମୋହର ମାରିଦେଉ । କିନ୍ତୁ ଜାଣି ରଖିବା , ଏହି ଭଳି ନେତାମାନେ ଆମର ପରମ ଶତ୍ରୁ । ଶପଥ କରିବା, ଭୋଟ ନାଁରେ କାହାଠାରୁ କିଛି ନେବାନାହିଁ । ଯିଏ ଯାଚୁଛି, ତାକୁ ଭୋଟ ଦେବା ନାହିଁ । ଆମ ମନକୁ ଦୃଢ଼ କରିବା । କାହାକୁ ଘୃଣା କରିବା ନାହିଁ । ଘୃଣାକଲେ, ଆମ ବୁଦ୍ଧି ବିବେକ ତଳେ ପଡ଼ିଯିବ । ଆମେ ଆମ ଶକ୍ତିକୁ ଠିକ୍ ଭାବରେ କାମରେ ଲଗାଇ ପାରିବା ନାହିଁ ।

ପଞ୍ଚାୟତ ବ୍ୟବସ୍ଥା ବହୁତ ଆଗରୁ କେରଳରାଜ୍ୟରେ ଓ ପଶ୍ଚିମବଂଗରେ ଗ୍ଲିଛି । ପଶ୍ଚିମବଂଗରେ ଜିଲ୍ଲାସ୍ତରରେ ଏପରିକି ରାଜ୍ୟ ସ୍ତରରେ ଏହି ବ୍ୟବସ୍ଥା ସମ୍ଭବ ହୋଇପାରିଛି । ଆମେ ସେମାନଙ୍କ ଭଳି କରିପାରିବା ଏଥିରେ ତିଳେମାତ୍ର ସଂଦେହ ନାହିଁ । ପଞ୍ଚାୟତି ରାଜ ହିଁ ପ୍ରକୃତ ଗଣତନ୍ତ୍ର । ଆମଦ୍ୱାରାହିଁ ଏହି ଗଣତନ୍ତ୍ର ସମ୍ଭବ ହୋଇପାରିବ । ଯଦି ଏହା ଆଉ କାହାଦ୍ୱାରା ହେବ ତେବେ , ଏହା ଆମପାଇଁ ନହୋଇ ଆଉ କାହାପାଇଁ ହେବ ।

ଆମ ପଞ୍ଚାୟତ ଶାସନକୁ ଠିକ ଭାବରେ ଚଳାଇବାପାଇଁ ଆମକୁ ସକ୍ରିୟ ଭାବରେ ଅଂଶ ଗ୍ରହଣ କରିବାକୁ ପଡ଼ିବ । ସେଥିପାଇଁ କେବଳ, ଭଲଗ୍ଷୀ, ଭଲ ବୁଣାକାର ବା ଭଲ ବଢ଼େଇଟିଏ ହେଲେ ଚଳିବ ନାହିଁ । ସବୁଆଡ଼କୁ ଲକ୍ଷ୍ୟରଖି ଆମକୁ ବିଗ୍ର କରିବାକୁ ପଡ଼ିବ । ସବୁଥିର ଭିତିରିଆ ଦିଗଗୁଡ଼ିକୁ ନଜର କରିବାକୁ ହେବ । ଗୋଟିଏ କଥାକୁ ଆଉଗୋଟିକଠାରୁ ଅଲଗା କରି ଦେଖିଲେ ହେବ ନାହିଁ । ଗୋଟିଏ ଆଉ ଗୋଟିଏ ସାଙ୍ଗରେ ବନ୍ଧା । ପୁଣି ସବୁ ଜିନିଷ ସ୍ଥିର ହୋଇ ରହିନାହିଁ । ଗତିଶୀଳ ଏ ଦୁନିଆ ଆଜି ଗତ କାଲିଠାରୁ ଅଲଗା । ପୁଣି ଆସନ୍ତା କାଲି ଆଜିଠାରୁ ଅଲଗା ହେବ । ସବୁଜାଣି ବି ଆମେ ଏହି ସତ୍ୟଟିକୁ ଭୁଲିଯାଉ । ଏ ସବୁକୁ

ମନରେ ରଖି ଆମେ ଆଗକୁ ଦେଖିପାରିବା ପାଇଁ ସକ୍ଷମ ହେବା ଆବଶ୍ୟକ । ଏ ସଂସାରରେ ଆପେ ଆପେ କିଛି ବି ହୁଏ ନାହିଁ । ସବୁ ଘଟଣା ପଛରେ କାରଣ ରହିଛି । ଶିଖିବା ପାଇଁ ଓ କାମ କରିବାପାଇଁ ଚାହୁଁଥିଲେ ଆମେ ଚାହୁଁଥିବା କଥା ହୋଇପାରିବ ।

ପଞ୍ଚାୟତ ହାତକୁ ଅନେକ କ୍ଷମତା ଦିଆଯାଉଛି । ଅନେକ ସମ୍ବଳ ବି ଦିଆଯାଉଛି । ଆମେ ଆମ ଗାଁରେ ସ୍କୁଲ କରିପାରିବା । ଆମ ପାଇଁ ସ୍ୱାସ୍ଥ୍ୟକେନ୍ଦ୍ର, ପାଠାଗାର, ଗାଁ ପାଇଁ ସବୁଦିନିଆରାସ୍ତା ଏମିତି ଅନେକ କିଛି କରିପାରିବା । ଜମିମାଲିକ ଚାଷ ନକରୁଥିଲେ, ଜମି ଛାଡ଼ି ଦେବେ । ଯିଏ ଜମି ଚାଷକରୁଛି, ଜମିତା'ର ହେବ । ମା ପେଟରୁ ଆମେ ଜମିଧରି କରି ଆସିନଥିଲେ । ମାତ୍ର ଆମ ଝାଳବୁହା ପରିଶ୍ରମ ଫଳରେ ସୁନାର ଫସଲ ଫଳୁଛି । କିନ୍ତୁ ଏଇଟା ବଡ଼ ଅନ୍ୟାୟର କଥା ଯେ, ଯିଏ ଜମି ଚାଷ ନକରି ଜମିର ମାଲିକ ବୋଲାଉଛି, ସେ ଫସଲକୁ ଉପଭୋଗ କରୁଛି । ସେ ଫସଲ ଜମାକରୁଛି, ମଉଜରେ ଖାଉଛି, ବଳକାତକ ବିକୁଛି । ମାତ୍ର ପରିଶ୍ରମ କଲାଲୋକ ପେଟ ପୂରା ଖାଇପାରୁନି । ଅନେକ ଜମି ସିଲିଂ ନୀୟମକୁ ନମାନିବା ପାଇଁ ଜମି ମାଲିକମାନେ, ପୁଅ,ଝିଅ, ନାତି,ନାତୁଣିଙ୍କ ନାଁରେ ଜମି ପଟା କରିଦେଲେ । ଅନେକ ଜାଗାରେ ଦେଖା ଯାଇଛି, ଜମିସବୁ ଅନେକ ଅବାନ୍ତର ନାଁ ଏପରିକି ପୋଷାକୁକୁର ନାଁରେ ବି ପଟା କରାଯାଇଛି । ଏ ସବୁ ଆଉ ଚଳିବ ନାହିଁ । ଆମକୁ ପାଟିଖୋଲି ଏସବୁ ବନ୍ଦ ହେଉ ବୋଲି କହିବାକୁ ହେବ ।

ସବୁଥିପାଇଁ ଆମକୁ ରାଜ୍ୟସରକାର ଓ କେନ୍ଦ୍ର ସରକାରଙ୍କ ସାହାଯ୍ୟ ଦରକାର ହେବ । ଏଥିପାଇଁ ପଞ୍ଚାୟତ ଆମକୁ ସାହସ ଯୋଗାଇବ । ଯଦ୍ଦ୍ୱାରା ଆମେ ଆମ ସମସ୍ୟାସବୁ ସରକାରଙ୍କୁ ଜଣାଇପାରିବା । ରାଜ୍ୟସରକାର ପଞ୍ଚାୟତ ଗୁଡ଼ିକୁ ଆଉ ଅବହେଳା କରିପାରିବେ ନାହିଁ । ସଂବିଧାନ ଅନୁସାରେ ବର୍ତ୍ତମାନ ପଞ୍ଚାୟତ ଗୁଡ଼ିକ ଯଥେଷ୍ଟ କ୍ଷମତାଶାଳୀ । ଆଗରୁ ଆମ ଗାଁ ପାଇଁ ଦିଲ୍ଲୀରେ ଓ ଭୁବନେଶ୍ୱରରେ ଯୋଜନା ହେଉଥିଲା । ଏବେ କିନ୍ତୁ ଓଲଟା ହେବ । ଆମ ଗାଁରେ କଅଣ ହେବ ତାହା ଆମ ପଞ୍ଚାୟତ ବୁଝିବ ।

''ଏହା ହେଉଛି ନୂଆ ପଞ୍ଚାୟତିରାଜ ଓ ନଗର ପାଳିକା ସଂଶୋଧନ ବିଲର ପ୍ରକୃତ ଅର୍ଥ ।''

ଆମେ ଆମ ଜୀବନକୁ ବଦଳାଇ ପାରିବା । ଆମପାଇଁ ଅବାଶ୍ୟକ ମୁତାବକ ଖାଇବା ପିନ୍ଧିବା, ରହିବା, ଶିକ୍ଷା ଦୀକ୍ଷା, ସ୍ୱାସ୍ଥ୍ୟ ସୁବିଧା ମିଳିପାରିବ, ଅବସର

ବିନୋଦନ ପାଇଁ ଆଉ ବିଶ୍ରାମ ପାଇଁ ସମୟ ମିଳିପାରିବ । ଆଜି ଏସବୁ ଆମକୁ ସ୍ୱପ୍ନପରି ଲାଗିପାରେ । ମାତ୍ର ସ୍ୱପ୍ନ ହିଁ ନୂଆ ଚିନ୍ତା ଆଣିଦିଏ । ନୂଆ ଯୋଜନା ଆଉ ନୂଆ କାର୍ଯ୍ୟକ୍ରମ ଆରମ୍ଭ ହୁଏ । ଆସ ଆଜି ହିଁ ଆମ ଭବିଷ୍ୟତପାଇଁ ସ୍ୱପ୍ନ ଦେଖିବା । କାଲିପାଇଁ ଆଉ ଅପେକ୍ଷା କରିବା ନାହିଁ ।

## ସମୀକ୍ଷା ଓ ଆଲୋଚନା

ଆମ ଦେଶ ପ୍ରତି ବିପଦ କଅଣ ?
ଆମେ ସମସ୍ତେ କଅଣ ଖୁସିରେ ଅଛନ୍ତି ?
ଆମର ସର୍ବନିମ୍ନ ଆବଶ୍ୟକତା ଗୁଡ଼ିକୁ ଆମେ ପାଇପାରୁଛେ କି ?
ଆମ ପିଲାଝିଲାଙ୍କ ଶିକ୍ଷା ଦିକ୍ଷା ପାଇଁ କି କି ସୁବିଧା ସବୁ ଅଛି ?
ଆମକୁ କେଉଁମାନେ ଶୋଷଣ କରୁଛନ୍ତି ?
ଆମର ଏ ଅବସ୍ଥା ସୁଧୁରିବ କିପରି ?
ଧର୍ମ ଜାତି ଆଉ ଦାରିଦ୍ର୍ୟ କଅଣ ମଣିଷକୁ ଚିହ୍ନିବାର ମାପକାଠି ?
ଆମେ କଅଣ ଆମ ଦେଶକୁ ଗଢ଼ିପାରିବା ?
ପଞ୍ଚାୟତିରାଜ ବ୍ୟବସ୍ଥା କଅଣ ?
ଆମେ ଏହାକୁ ଗଠନ କରିବାରେ କିପରି ସାହାଯ୍ୟ କରିପାରିବା ?

### ଆମର କଅଣ ଆବଶ୍ୟକ

- ରୋଜଗାର ପାଇଁ କାମ ।
- ସମସ୍ତଙ୍କପାଇଁ ସ୍ୱାସ୍ଥ୍ୟ ।
- ସମସ୍ତଙ୍କପାଇଁ ଶିକ୍ଷା ।
- ଗାଁ ଗାଁରେ ପୁସ୍ତକାଳୟ ।
- ମହିଳା ଓ ପୁରୁଷଙ୍କର ସମାନ ଅଧିକାର ସମାନ ସୁବିଧା ।
- ଗାଁ ପାଇଁ ଯୋଜନା ଗାଁରେ କରାଯିବ ।।

# ହୋଙ୍ଗେ କାମ୍ୟାବ୍ ଏକଦିନ୍

ହୋଙ୍ଗେ କାମୟାବ, ହମ୍ ହୋଙ୍ଗେ କାମୟାବ୍
ହମ୍ ହୋଙ୍ଗେ କାମ୍ୟାବ ଏକ୍ ଦିନ୍
ହୋଙ୍ଗେ ହୋ ମନମେ ହୈ ବିଶ୍ୱାସ୍
ପୁରା ହୈ ବିଶ୍ୱାସ
ହମ୍ ହୋଙ୍ଗେ କାମୟାବ ଏକ୍ ଦିନ୍
ନହିଁ ଡ଼ର୍ କିସିକା ଆଜ୍ , ନହିଁ ଡ଼ର୍ କିସିକା ଆଜ୍
ନହିଁ ଡ଼ର୍ କିସିକା ଆଜ୍ ଏକ୍ ଦିନ୍
ହୋ-ହୋ ମନ୍‌ମେ ହୈ ବିଶ୍ୱାସ ପୁରା ହୈ ବିଶ୍ୱାସ୍
ହମ ହୋଙ୍ଗେ କାମୟାବ ଏକଦିନ୍ ।
ହମ୍ ଚଲେଙ୍ଗେ ସାଥ୍ ସାଥ୍ ଡାଲେ ହାତୋଁମେ ହାତ
ହମ୍ ଚଲେଙ୍ଗେ ସାଥାସାଥ୍ ଏକଦିନ୍
ହୋ -ହୋ ମନ୍ ମେ ହୈ ବିଶ୍ୱାସ୍, ପୁରା ହୈ ବିଶ୍ୱାସ୍
ହମ୍ ଚଲେଙ୍ଗେ ସାଥ୍ ସାଥ୍ ଏକ ଦିନ୍
ହୋଙ୍ଗି ଶାନ୍ତି ଗ୍ୱରୋଁ ଔର, ହୋଙ୍ଗି ଶାନ୍ତି ଗ୍ୱରୋଁ ଔର
ହୋଙ୍ଗି ଶାନ୍ତି ଗ୍ୱରୋଁ ଔର ଏକ୍ ଦିନ୍
ହୋ-ହୋ ମନ୍ ମେ ହୈ ବିଶ୍ୱାସ୍, ପୁରା ହୈ ବିଶ୍ୱାସ୍
ହମ ହୋଙ୍ଗେ କାମୟାବ ଏକ ଦିନ୍ ।

***ପ୍ରକାଶକ*** -
ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା ହମାରା ଦେଶ ପ୍ରୋଗ୍ରାମ୍ କମିଟି ।
ଏ/୧୨, (HIG) ବରମୁଣ୍ଡା ହାଉସିଂବୋର୍ଡ଼ କଲୋନୀ, ଭୁବନେଶ୍ୱର
ଫୋନ୍ - ୪୦୦୮୯୧

***Printed at*** -
SRI GURU GOURANGA PRESS
NAYAPALLI, BHUBANESWAR - 751 012
Phone - 55517

Contribution Price - **Rs. 2 / -**